

# ଅମରସିଂହ ।

( ନାଟକ )

ଡ଼ ବୃନ୍ଦାବନବିହାରୀ ଦାସ ।

# ଅମରସିଂହ ।

—:୦*୦:—

ଶ୍ରୀ ବୃନ୍ଦାବନବହ୍ୱାସ୍ର ଦାସଙ୍କ ଦ୍ୱାରପ୍ରଣୀତ

ଓ ପ୍ରଥମବାର ପ୍ରକାଶିତ ।



PRINTED BY P. C. DAS.
AT THE SHAKTI PRESS,
PURI.
1925

ମୂଲ୍ୟ ୦ ° ୷ ମାତ୍ର । ବାରଅଣ ଅଣା ମାତ୍ର

# ଉତ୍ସର୍ଗ ପତ୍ର ।



ଦୀନବତ୍ସଳ ପ୍ରଜାରଞ୍ଜନ ସତତଃ ଦାନ-ଧର୍ମ୍ମ-କ୍ଷାନ ସ୍ୱଶୋଭିନଯଶ ସୌରଭ-ସୁନ୍ଦର ସାହିତ୍ୟାନୁରାଗୀ ଉତ୍କଳ ପ୍ରସିଦ୍ଧ ରଣପୁର ରାଜେନ୍ଦ୍ର ବୀରବର ଶ୍ରୀଶ୍ରୀଶ୍ରୀ କୃଷ୍ଣଚନ୍ଦ୍ରସିଂହ ଦେଓ ବଜ୍ରଧର ନରେନ୍ଦ୍ର ମାହାପାତ୍ରଙ୍କ ଅମର ନାମରେ ଏ ଦୀନ ଲେଖକର ପବିତ୍ର ଭକ୍ତିର ନିଦର୍ଶନସ୍ୱରୂପ ଏ କ୍ଷୁଦ୍ର ଅମରସିଂହ ନାଟକଟି ଉତ୍ସର୍ଗୀକୃତ କଲି । ଇତି ।

| | |
|---|---|
| ଶ୍ରୀ ପଞ୍ଚମୀ<br>ତା ୨୮।୧।୨୫ | ନିବେଦକ<br>ଶ୍ରୀ ବୃନ୍ଦାବନବିହାରୀ ଦାଶ |

# ଭୂମିକା ।



କବି ପଣ୍ଡିତ ବା ଭାବୁକ କୌଣସି ଶ୍ରେଣୀରେ ଏକ୍ଷୁଦ୍ର ଲେଖକ ଅନୁଭୁକ୍ତ ନୁହେ, ନାଟକ ଲେଖି କବି ବା ଲବଧ୍ ପ୍ରତିଷ୍ଠ ହେବାଲାଗି ଏକ୍ଷୁଦ୍ର ହୃଦୟ ପଟରେ କେବେ ହେଲେ ଅଦମ୍ୟ ଆଶାର ପ୍ରବାହ ପ୍ରବାହିତ ହୋଇନାହିଁ । ଭବମୟୀ ଉତ୍କଳର ହୀନ ନାଟକ ଭଣ୍ଡାରରେ ଆଜ ଗୋଟିଏ ନଗଣ୍ୟ ଗଡ୍ଡାଳିକାର ସଂଖ୍ୟା ମାତ୍ର ।

ବନ୍ଧୁବର ଯାବତ ରଙ୍ଗମଞ୍ଚରେ ଦନାଭପାତ କରୁ ଯେଉଁ ମୁଷ୍ଟି-ମେୟ ସ୍ୱଳ୍ପ ଅକାହ୍ନୁ କର ଜ୍ଞାନ ବନ୍ଧୁବଧ ନାଟକ ଅଭିନୟରେ ସମ୍ପନ୍ନ କରିଅଛନ୍ତି, ତାହାଁର ନିଦର୍ଶନ ସ୍ୱରୂପ ଏକ୍ଷୁଦ୍ର ଅମରସିଂହ ନାଟକର ଲେଖା ପୁସ୍ତକ ମୁଦ୍ରଣରେ ଆପଣମାନଙ୍କ ସମକ୍ଷରେ ଉପସ୍ଥାପିତ କରି ସର୍ବବିଧ ଦୋଷାଦୋଷ ଲାଗି କ୍ଷମାଭିକ୍ଷା କଲି ।

ଶ୍ରଦ୍ଧେୟ ଶ୍ରୀଯୁକ୍ତ ବାବୁ ଅଶ୍ୱିନୀ କୁମାର ଘୋଷ ଏମ୍, ଏ, ଓ ଶ୍ରୀଯୁକ୍ତ ବାବୁ ବାଞ୍ଛାନିଧି ମହାପାତ୍ର ଏମ୍; ଏ, ବି, ଏଲ୍, ମହୋଦୟ ମାନେ ଅନୁଗ୍ରହ କରି ଏକ୍ଷୁଦ୍ର ପୁସ୍ତକଟିର ପାଣ୍ଡୁ ଅମୂଳ ସଂଶୋଧନ କରି ଥିବାରୁ ମୁଁ ସେମାନଙ୍କ ନିକଟରେ ଚିରଋଣୀ ରହିଲି ।

ବାଲେଶ୍ୱର
ଶ୍ରୀ ପଞ୍ଚମୀ
ତା ୨୮।୧।୨୫



ଶ୍ରୀ ବୃନ୍ଦାବନ କହାଳି ଦାଶ

# ଅମରସିଂହ।



## ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ।

### ପୁରୁଷ

ବିଜୟସିଂହ — ବିଳାସପୁର ରାଜା।

ଅମରସିଂହ — ଏଜନ ଜ୍ୟେଷ୍ଠପୁତ୍ର।

ଅଜୟସିଂହ — ଏଜନ କନିଷ୍ଠପୁତ୍ର।

ରଘବଜ — ସାହାପୁରରାଜା ପୃଥ୍ୱୀରାଜଙ୍କ ସେନାପତି।

ଗୁଣଧର — ବିଳାସପୁରର ବିତାଡିତ ମନ୍ତ୍ରୀ।

ବିଳାସପୁରମନ୍ତ୍ରୀ; ଗ୍ରାମବାସିଗଣ, ବ୍ରାହ୍ମଣ, ଦୂତ, ପ୍ରହରୀ, ଘାତକଗଣ, ଦସ୍ୟୁଗଣ, ଅଗାଧୂମିନ୍ଦ୍ରେ, ଅନାମ,—ରାଜାଙ୍କ ଗୃକର।

### ସ୍ତ୍ରୀ

କମଳା ସୁନ୍ଦରୀ। ସାହାପୁରରାଣୀ।

ରୋହିଣୀ। ଏଜନ କନ୍ୟା।

ବିମଳା। ଏଜନ ସହଚରୀ।

ସୁଶୀଳା ସୁନ୍ଦରୀ। ବିଳାସପୁରରାଣୀ।

ଦାସୀଦ୍ୱୟ, ନର୍ତ୍ତକୀଗଣ, ଇତ୍ୟାଦି॥

# ଅମରସିଂହ ।

—o—

## ପ୍ରଥମ ଅଙ୍କ ।

### ପ୍ରଥମ ଦୃଶ୍ୟ—"ରାଜସଭା"

(ରାଜା ବିଜୟସିଂହ ସିଂହାସନୋପରି ଆସୀନ, ତତ୍‌ପାର୍ଶ୍ୱେ ମନ୍ତ୍ରୀ, ରାଘବଜୀ ଓ ପ୍ରହରୀ ଦଣ୍ଡାୟମାନ )

ରାଜା—ରାଘବଜୀ ! ପୃଥ୍ୱୀରାଜସିଂହଙ୍କ ମୃତ୍ୟୁ ସାହାପୁର ରାଜ୍ୟର ଦୁର୍ଭାଗ୍ୟ ବୋଲିବାକୁ ହେବ ।

ରାଘବଜୀ—ମିଥ୍ୟା ନୁହେଁ ମହାରାଜ ! ପୃଥ୍ୱୀରାଜଙ୍କ ମୃତ୍ୟୁରେ ଆଜି ସାହାପୁର ରାଜ୍ୟ ଶ୍ରୀବିହୀନ ହୋଇଅଛି; ସାହାପୁର ଷାର ରାଜଭକ୍ତ ପ୍ରଜାବୃନ୍ଦ ହାହାକାର ଧ୍ୱନିରେ ଆକାଶ ମେଦିନୀ ପ୍ରତିଧ୍ୱନିତ କରୁଅଛନ୍ତି ।

ରାଜା—ଆଉ ରାଣୀଙ୍କର ସମ୍ବାଦ କଣ ରାଘବଜୀ ?

ରାଘବଜୀ—ମହାରାଣୀ ! ମହାରାଣୀ ସାକ୍ଷାତ୍ ଶୋକର ଜ୍ୱଳନ୍ତ ପ୍ରତିମୂର୍ତ୍ତି । ମାତ୍ର ଏ ବିପଦରେ ମଧ୍ୟ ପ୍ରଜାମାନଙ୍କ ପ୍ରତି ନିଜର କର୍ତ୍ତବ୍ୟଭୁଲି ନାହାନ୍ତି । ଅନ୍ତରରେ ନିଜର ଅସହ୍ୟ ଦାରୁଣ ଶୋକାଗ୍ନି ସଂଗୋପନ କରି, ପ୍ରଜାମାନଙ୍କ ହିତସାଧନ ଓ ରାଜ୍ୟର ଗୌରବ ରକ୍ଷାର୍ଥେ ମନଃପ୍ରାଣ ସମର୍ପଣ କରି ଅଛନ୍ତି ।

ରାଜା—ମହାରାଣୀଙ୍କର କନ୍ୟାଟି କେଉଁଠାରେ ?

ରାଘବଜୀ—ଆଜକୁ ପ୍ରାୟ ଏକମାସ ହେବ ମାତୁଳାଳୟରେ ଅଛନ୍ତି ।

ରାଜା—ଆଚ୍ଛା ରାଘବଜୀ ! ମୁଁ ତୁମ୍ଭଙ୍କୁ ଏଠାକୁ ଡକାଇବାର ଅଭିପ୍ରାୟ କଣ ବୁଝିଛ କି ?

ରାଘବଜୀ—ନା ମହାରାଜ !

ରାଜା—ଦେଖ ରାଘବଜୀ ! ତୁମ୍ଭଉପରେ ଗୋଟିଏ ଗୁରୁତର କାର୍ଯ୍ୟର ଭାର ନ୍ୟସ୍ତ କରିବ ।

ରାଘବଜୀ—ମୋଦ୍ୱାରା କି ଗୁରୁତର କାର୍ଯ୍ୟ ସାଧିତହେବ ମହାରାଜ ?

ରାଜା—ଏକା ତୁମ୍ଭେହିଁ ସେ କାର୍ଯ୍ୟ କରିବାକୁ ସକ୍ଷମ । କରି ପାରିବ କି ?

ରାଘବଜୀ—ଏପରି କି ସେ କାର୍ଯ୍ୟଟି ମହାରାଜ ! ଯାହା ଏକା ରାଘବଜୀ ଦ୍ୱାରା ହୋଇପାରେ ?

ରାଜା—ରାଘବଜୀ ! ଯଦି ତୁମ୍ଭର ମହାରାଣୀଙ୍କୁ ମୋତେ ଧରାଇ ଦେବ, ତେବେ ମୁଁ ତୁମ୍ଭଙ୍କୁ ଦଶସହସ୍ର ସ୍ୱର୍ଣ୍ଣମୁଦ୍ରା ପୁରସ୍କାରଦେବି ।

ରାଘବଜୀ—ମହାରାଜ ! ରାଘବଜୀଙ୍କୁ ଆପଣ ଚିହ୍ନିନାହାନ୍ତି । ରାଘବଜୀ ଏପରି ଅର୍ଥପିଶାଚ ନୁହେଁ ଯେ ସାମାନ୍ୟ ଧନ ଲାଳସାରେ ସାମାନ୍ୟ ସ୍ୱାର୍ଥସିଦ୍ଧି ପାଇଁ, ଦେଶଦ୍ରୋହୀ, ରାଜଦ୍ରୋହୀ ଓ ଆତ୍ମଦ୍ରୋହୀ ହେବ । ରାଘବଜୀଙ୍କୁ ଏତେ ନୀଚହୃଦୟ ଓ ବିଶ୍ୱାସଘାତକ ବୋଲି ଭାବିବେ ନାହିଁ, କ୍ଷମା କରନ୍ତୁ ମହାରାଜ ! ଏକା ରାଘବଜୀହିଁ ଏପରି କାର୍ଯ୍ୟ କରିବାକୁ ସମସ୍ତଙ୍କ ଠାରୁ ବେଶୀ ଅକ୍ଷମ । ମହାରାଣୀଙ୍କର ଅପରାଧ କଣ ମହାରାଜ ?

ରାଜା—ଅପରାଧ ! ଜାଣ ରାଘବଜୀ, ମତେ ତାଙ୍କର ପଦ ସେବାରେ ନିଯୁକ୍ତ କରିବେ ବୋଲି, ପତ୍ର ଲେଖି ଅଛନ୍ତି ।

ରାଘବଜୀ—ମହାରାଣୀ ଯାହା କର୍ତ୍ତବ୍ୟ ଜ୍ଞାନ କରି ଅଛନ୍ତି, ତାହା କରିଛନ୍ତି । ସେଥିରେ ତାଙ୍କର ଅପରାଧ ହେଲାବୋଲି ମୁଁ କହି ନପାରେ ।

ରାଜା—କର୍ତ୍ତବ୍ୟ ? କର୍ତ୍ତବ୍ୟ ? ବିଳାସପୁରର ମହାରାଜାଙ୍କୁ ପଦସେବା-
ନିଯୁକ୍ତ କରିବା କି ତାଙ୍କର କର୍ତ୍ତବ୍ୟ? ତେବେ ଦେଖାଯିବ ତୁମ୍ଭର
ରାଣୀ କିପରି କର୍ତ୍ତବ୍ୟ ସାଧନ କରିବେ ?

ରାଘବଜୀ—ମହାରାଜ ! ଆପଣ ରାଜାହୋଇ ପ୍ରଜାପୁଞ୍ଜର ପାଳକ,
ଶାସକ ଓ ନିୟାମକ ହୋଇ, ରାଘବଜୀଙ୍କୁ ଯେ ଆଦେଶ ମନେ।
ଦେଉଅଛନ୍ତି ତାହା ଜଣେ ରାଜା ମୁଖରେ ନିତାନ୍ତ
ଅଶୋଭନୀୟ । ସେନାପତି ରାଘବଜୀ ଏପରି ଭୀରୁ ପାମରୋ-
ଚିତ କାର୍ଯ୍ୟ କରିବାକୁ ଏକାନ୍ତ ଅକ୍ଷମ। ମହାରାଜ ! ଏଦେହର
ପ୍ରତ୍ୟେକ ଧମନୀରେ କ୍ଷତ୍ରିୟଶୋଣିତ ପ୍ରବାହିତ ହେଉଅଛି।
ପ୍ରକୃତ କ୍ଷତ୍ରିୟବୀର ପକ୍ଷେ ଏପରି ବିଶ୍ୱାସ ଘାତକତା ଘୋର
ଲଜ୍ଜା, ଘୋର କଳଙ୍କର ବିଷୟ । ସାବଧାନ ମହାରାଜ !
ଭାବି ଦେଖନ୍ତୁ ।

ରାଜା—ରାଘବଜୀ ! ଜାଣତୁମ୍ଭେ କାହା ସମ୍ମୁଖରେ ଦଣ୍ଡାୟମାନ ହୋଇ
କଥାକହୁଛ ?

ରାଘବଜୀ—ଜାଣେ ମହାରାଜ ! ବିଳାସପୁରର ବିଶ୍ୱାସଘାତକ ରାଜା
କ୍ଷତ୍ରିୟକୁଳ-କଳଙ୍କ ଧିରଜୟସିଂହ ସମ୍ମୁଖରେ !

ରାଜା—ସାବଧାନ ରାଘବଜୀ !

ରାଘବଜୀ—ବୃଥା ଭର୍ତ୍ସନାର ପ୍ରୟୋଜନ ନାହିଁ ମହାରାଜ ! ରାଘବଜୀ ବର୍ତ୍ତ-
ମାନ ନିରୁପାୟ, ନୋହିଲେ ମୁହୂର୍ତ୍ତମଧ୍ୟରେ ବିଳାସପୁରର
ଚିତ୍ତସ୍ଥିତି ରହନ୍ତାନାହିଁ ।

ରାଜା—ରାଘବଜୀ ! ପୁଣିକହେ ସାବଧାନ ! ଜୀବନପ୍ରତି ମମତାରଖି
କଥା କହ ।

ରାଘବଜୀ—ମହାରାଜ ! ଏବୃଦ୍ଧ ଅବାଳରୁ ଯୁଦ୍ଧ କରି କରି ଜୀବନର
ସମସ୍ତ ମାୟା ମମତା ଛିନ୍ନ କରି ଦେଇଛି । ଏ ଦେହ ଦୃଢ଼



ପାଷାଣରେ ପରଣତ ହୋଇଅଛି । ଏ ହସ୍ତ ଅସ୍ତ୍ରଧାରଣରେ ବଜ୍ର ସଦୃଶ ହୋଇଅଛି ।

ରାଜା—ଏହାର ପ୍ରତିଫଳ କଣ ଜାଣ ରଘୁବଂଶ ?

ରଘୁବଂଶ—ଜାଣେ ମହାରାଜା ! ଆପଣଙ୍କ ପରି କାପୁରୁଷ ହାତରୁ କି ପ୍ରତିଫଳ ଆଶା କରାଯାଏ । ବର୍ତ୍ତମାନ ମୁଁ ନିରସ୍ତ୍ର,ଏକାକୀ, ପ୍ରତିଫଳ କାରାବାସ ।

ରାଜା—ଚୁପ କର ପାମର ।

ରଘୁବଂଶ—ମହାରାଜ ! ରକ୍ତ ଚକ୍ଷୁ ଉନ୍ମୀଳନ କରି କାହା ଉପରେ ଦୃଷ୍ଟି ପାତ କରୁଅଛନ୍ତି ? ସେ ଦୃଷ୍ଟି ରଘୁବଂଶକୁ ଲେଶ ମାତ୍ର ବିଚଳିତ କରି ନପାରେ । ଜାଣନ୍ତୁ ତ ମହାରାଜ ! ପୃଥ୍ୱୀରାଜ ସିଂହଙ୍କ ଅନ୍ନରେ ଏ ଜୀବନ ପ୍ରତିପାଳିତ । ଏ ଦେହରେ ପ୍ରତ୍ୟେକ ରକ୍ତ ବିନ୍ଦୁ ତାଙ୍କର କାର୍ଯ୍ୟରେ ନିଯୋଜିତ । ଜାତି, ଧର୍ମ, ମାନ ରକ୍ଷାପାଇଁ, ସ୍ୱଦେଶର ସ୍ୱାଧୀନତା ରକ୍ଷା ପାଇଁ ଏ ଦେହ ଉତ୍ସୃଷ୍ଟ, ରଘୁବଂଶ ଆପଣଙ୍କ ପରି ପିଶାଚ ନୁହେଁ ଯେ ସାମାନ୍ୟ ସ୍ୱାର୍ଥ ସିଦ୍ଧି ପାଇଁ ସାମାନ୍ୟ ଉତ୍କୋଚ ପ୍ରଲୋଭନରେ, ତାଙ୍କ ଅନ୍ନଦାତ୍ରୀ, ପାଳୟିତ୍ରୀ, ସାକ୍ଷାତ ଦେବୀତୁଲ୍ୟା ମହାରାଣୀଙ୍କ ଆଣି ଅର୍ପଣ କରିବ । ଆପଣ ବିଶ୍ୱାସ ଘାତକ, ବିଶ୍ୱାସ ଘାତକତା କରି ମୋର ପ୍ରଭୁଙ୍କୁ ହତ୍ୟାକରି, ମନେ କରିଛନ୍ତି ମହାରାଣୀଙ୍କୁ ଆଣି ସେହିପରି କହତ କରିବେ ? ଜାଣିଥିବେ ମହାରାଜ ! ରଘୁବଂଶ ଜୀବିତ ଥିବାଯାଏ ମହାରାଣୀଙ୍କୁ ଧରି ଆଣିବା ଦୂରେ ଥାଉ ତାଙ୍କର ଛାୟା ସ୍ପର୍ଶ କରି ପାରିବେ ନାହିଁ ।

ରାଜା—ମନ୍ତ୍ରୀ ! ଏ ନରାଧମକୁ ଏହି ମୁହୂର୍ତ୍ତେ ବନ୍ଦୀକରି କାରାଗୃହକୁ ନେଇ ଯାଅ, ଏତେ ଆସ୍ପର୍ଦ୍ଧା ! ରାଜସଭା ସମ୍ମୁଖରେ ରାଜାଙ୍କୁ ରାଜସିଂହାସନକୁ, ରାଜନୀତିକୁ ଏତେଦୂର ହେୟଜ୍ଞାନ ? ପ୍ରହରୀ

( ପ୍ରହରୀଦ୍ୱୟ ପ୍ରବେଶ )

ଏହି ନରାଧମଙ୍କୁ ଏହି ମୁହୂର୍ତ୍ତେ ବନ୍ଦୀକରି କାରାଗୃହକୁ ନେଇଯାଅ ।

ରାଘବଜୀ—ମହାରାଜ ! ଏ ବନ୍ଧନ ରାଘବଜୀ ପକ୍ଷେ ଅଳଙ୍କାର ! ସେଥି- ପାଇଁ ରାଘବଜୀର ଲେଶ ମାତ୍ର ଚିନ୍ତା ନାହିଁ । କିନ୍ତୁ ମହାରାଜ ! ଗୋଟିଏ କଥା କହି ଯାଉଛି-ମନେ ରଖିଥିବେ ଆଜି ଯେପରି ମହାନ୍ଧହୋଇ ଆପଣ ନିରପରାଧିଙ୍କୁ ଦଣ୍ଡ ଦେଉଅଛନ୍ତି, ସେହି- ପରି ଆପଣ ନିଶ୍ଚୟ ଦିନେ ଭଗବାନଙ୍କ କର୍ତ୍ତୃକ ଦଣ୍ଡିତ ହେବେ ।

ରାଜା—ଯାଅ, ନେଇ ଯାଅ ।

( ପ୍ରହରୀଦ୍ୱୟ ରାଘବଜୀଙ୍କୁ ନେଇ ପ୍ରସ୍ଥାନ )

ମନ୍ତ୍ରୀ—ମହାରାଜ ! ରାଘବଜୀଙ୍କୁ ବନ୍ଦୀ କଲେ ବିପଦ ଘଟିବାର ସମ୍ଭାବନା ।

ରାଜା – ମନ୍ତ୍ରୀ ! ରାଜା ଜୟସିଂହ ବର୍ତ୍ତମାନ ବିଶ୍ୱରକର୍ତ୍ତା, ଭୟ କରିବାର କୌଣସି କାରଣ ନାହିଁ ।

ମନ୍ତ୍ରୀ – ଭୟ ନୁହେଁ ମହାରାଜ ! ତେବେ ଏହାର ଫଳସ୍ୱରୂପ ନିକ- ଟରେ ଗୋଟିଏ ଭୀଷଣ ଯୁଦ୍ଧ ହେବ ! ଅକାରଣେ ପ୍ରଜାଙ୍କସ୍ୱ ଓ ଅର୍ଥହାନି ହେବ ।

ରାଜା—ବର୍ତ୍ତମାନ ସେ କଥା ଛାଡ ମନ୍ତ୍ରୀ, ଯେତେବେଳେ ରାଘବଜୀ ମୋ ହସ୍ତେ ବନ୍ଦୀ, ତେତେବେଳେ ଗର୍ବିଣୀ କମଳାର ଗର୍ବ ଖର୍ବ ହୋଇଛି । ଯାଅ ମନ୍ତ୍ରୀ, ସେନାପତିଙ୍କୁ ଜଣାଅ ଶୀଘ୍ର ଯୁଦ୍ଧର ଆୟୋଜନ କର ।

ମନ୍ତ୍ରୀ – ଯେ ଆଜ୍ଞା ମହାରାଜ !                    ( ପ୍ରସ୍ଥାନ )

ରାଣା — କମଳା ସୁନ୍ଦର ! ଏହି ଥର ତୋର ଗର୍ବପର୍ବତ-ଉଚ୍ଚତମ-ଶୃଙ୍ଗ ଚୂର୍ଣ୍ଣ ହୋଇଛି । ଦେଖିବି କପର ବଳାସପୁର ମହାରାଜାଙ୍କୁ ତୋ ପଦ ସେବାରେ ନିଯୁକ୍ତ କରିବା ତୋର କର୍ତ୍ତବ୍ୟ ।

[ ପ୍ରସ୍ଥାନ ]

— o —

ଦ୍ୱିତୀୟ ଦୃଶ୍ୟ—ରାଜପଥ ।

( ଦୁଇଜଣ ଗ୍ରାମବାସୀଙ୍କର ପ୍ରବେଶ । )

ପ୍ରଥମ — ଅରେ ଭାଇ ! "ବୁଝିଲୁ କନା" କଣ କରିବା କହିଲୁ ଭଲା ? ପନ୍ଦର ଦିନ ତଳେ ଯୁଦ୍ଧ ହୋଇଥିଲା ଯେ " ବୁଝିଲୁ କନା" ସେଥି ପାଇଁ ମୁଁ ଦେଇଥିଲି ଦୁଇଭରଣ ଚାଉଳ, ଦଶ-ଟୋଷି ମୁଗ, " ବୁଝିଲୁ କନା " ପୁଣି କୋଉଁଠାଏ କଣ ଯୁଦ୍ଧ ହେଉଛି ଯେ ଅଜ ଫେର୍ "ବୁଝିଲୁ କନା" ନାଗରା ଡିଣ୍ଡି-ଦେଇ ଗଲାଣି । କହି ଗଲାଣି ଯେ ଘରପିଛା 'ବୁଝିଲୁ କନା' ଦୁ ଭରଣ ଧାନ ଦଶ ଟୋଷି ମୁଗ ଦେବାକୁ ହେବ । କୁଆଡୁ ପାଇବ କହିଲୁ ଭାଇ ? ନଜେତ ଖାଇବା ଦନା ଅସି 'ବୁଝିଲୁ କନା' ଦରମଲା ହେଲେଣି । କୁଆଡୁ କଣ ପାଇବ ଯେ ଦେବ ?

ଦ୍ୱିତୀୟ — ଅରେ ଭାଇ ! 'ତାନା କଣକି' ମୁଁ ବ ଅସି ମଲିଣି । ବିଲରେ 'ତାନା କଣକି' ହଳବି ହୋଇ ପାରିଲା ନାହିଁ । ମାଟି ଉପରେ 'ତାନା କଣକି' ଅଣ୍ଟିଏ ଘାସ ଠିଆ ହୋଇଛି । ଗଣ୍ଡ ଙ୍କର ବୋଲି ପଟେ ଦଦରା ହଡ଼ା ବଳଦ ଥିଲା ଯେ 'ତାନା କଣ କି' ତାକୁ ବିକି ସେଥର ଧାନ, ମୁଗ କଣି ଦେଇଥିଲି । ଏବେ କୁଆଡୁ କଣ ଅଣି ଦେବ 'ତାନା କଣକି' କଛି ଠିକ କରି ପାରୁ ନାହିଁ ।

ପ୍ରଥମ— ଅରେ ଭାଇ ! 'ବୁଝିଲ୍ କିନା' ରଜା ରଜାର ଲଢେଇ ଲାଗିଛି, ମଝିରେ ଭେଦାରେ ପଡ଼ 'ବୁଝିଲ୍ କନା' ଅରକ୍ଷପ୍ରଜା ଗୁଡ଼ାକ ମରୁଛନ୍ତି ।

ଦ୍ୱିତୀୟ— ଅରେ ଭାଇ ! ଆମ ରଜାଙ୍କ 'ତାନା କଣକି' ବଡ଼ ଦୁଷ୍ଟ, ବଡ଼ ଅତ୍ୟାଚାରୀ । ଆପଣା ପ୍ରଜାଙ୍କ ପ୍ରତି 'ତାନା କଣକି' ଟିକଏ ହେଲେ ଦୟା ନାହିଁ ।

ପ୍ରଥମ— ଆଚ୍ଛା ଭାଇ ! ଅକାରଣେ କାହିଁକି "ବୁଝିଲ୍ କନା" ସେହି ରଜାଙ୍କ ସାଙ୍ଗେ ଯୁଦ୍ଧ କରୁ ଅଛନ୍ତି ?

ଦ୍ୱିତୀୟ— ଆରେ ଜାଣିନାହୁଁକି ? ଅମ ରଜା ଜଙ୍ଗଲ ସବୁ "ତା ନା କଣକି" ସେ ରଜା ଜଙ୍ଗଲ ଲଗାଲଗି, ଯୋଉଁଠିଏ ହାତୀ "ତାନା କଣକି" ଆମ ରଜା ଜଙ୍ଗଲରୁ ଯାଇ ସେ ରଜା ଜଙ୍ଗଲରେ "ତା ନା କଣ କି" ସେ ରାଇଜର ଫସଲ ନୋକସାନ କଲା । ସେଇଠୁ କଣ ହେଲାକି ସେ ରଜା ତାକୁ ମାରି ପକାଇଲା । ସେଥିପାଇଁ "ତା ନା କଣକି" ଦୁଇ ରାଜାଙ୍କର ଲଢେଇ ଲାଗିଲା, ଆମ ରଜା 'ତାନା କଣକି' ତା ସଙ୍ଗେ ହାରି ଯିବାରୁ ତାଙ୍କର ଭାରି ରାଗ ହେଲା । ସେଥିପାଇଁ "ତା ନା କଣକି" ଆମ ରଜା ତାଙ୍କ ସଙ୍ଗେ ମିଳାମିଶା ହେବାକୁ ତାଙ୍କ ଆଣି ଭାତ ସଙ୍ଗେ "ତା ନା କଣକି" ବିଷ ଦେଇ ମାରି ପକାଇଲେ । ସେଇଠୁ ତ "ତା ନା କଣକି" ଯୁଦ୍ଧ ଚାଲିଛି ।

ପ୍ରଥମ— 'ବୁଝିଲ୍ କିନା' ଆମ ରଜାଙ୍କ ଭାରି ପ୍ରଜାପୀଡ଼କ, ଅଧର୍ମୀ ଓ ଅତ୍ୟାଚାରୀ । କେତେବେଳେ ସେ 'ବୁଝିଲ୍ କନା' କାହା କପାଳ ଫାଟିବ ଜଣା ନାହିଁ । ଏ ରାଇଜରେ ରହିବାକୁ 'ବୁଝିଲ୍ କନା' ମୋର ଟିକିଏ ହେଲେ ମନ ହେଉନାହିଁ ।

ଦ୍ୱିତୀୟ—ଆ ର ଭାଇ ! ମୋର ବ 'ତାନା କଣକି' ସେମିତ ଇଚ୍ଛା ହେଉଛି । କୁ କଥାରେ ସୁଖ ଅଛି ଯେ 'ତା ନା କଣକି' ଏ ସହରରେ ରହିବା । ଜଙ୍ଗଲରୁ ତ 'ତା ନା କଣକି' ଖଣ୍ଡିଏ କାଠ କାଟି ପାଇଲୁ ନାହିଁ, ପତର ପୁଞ୍ଜାଏ ଆଣି 'ତା ନା କଣକି' ସିଲେଇ କରି ବିକି ଦି ପଇସା ଆଣୁଥିଲୁ ଯେ ସେତକ ବି ବନ୍ଦ । ଆଉ କିମିତି ଏ ସହରରେ 'ତା ନା କଣ କି' ଚଳିବା ? ଯାହା ହେଉ ପଛେ ମୁଁ ଆଉ 'ତା ନା କଣ କି' ଏଠି ରହିବି ନାହିଁ ।

ପ୍ରଥମ—ଆରେ ଚୁପ୍ ଚୁପ୍ । ଏଇ ଦେଖେ କିଏ ଆସୁଛି । ରାଜା କାନକୁ 'ଗୁଣ୍ ଗ୍ କିନା' ଆମ କଥା ଗଲେ, ମୁଣ୍ଡରେ ଅସି ସିଧା ଚଢ଼ିକ ପଡ଼ିବ ।

(ଜଣେ ବ୍ରାହ୍ମଣ କୁଶ ପାଣି ନେଇ, ସଙ୍ଗେ ତାର ସ୍ତ୍ରୀ ଛିଣ୍ଡା କନ୍ଥା ନେଇ ଓ ତାର ଝିଅ ଗୋଟାଏ ବାଛୁରୀ ନେଇ ଟାଣି ଯାଉଥିବା, ପଛେ ଜଣେ ଚଷା ଯଜମାନ ଶ୍ରାଦ୍ଧର ଉପକରଣ ନେଇ ପ୍ରବେଶ )

ବ୍ରାହ୍ମଣ—ଅରେ ଆସଗିର ୨ ।

ଯଜମାନ—ହୋ ଗୋସେଇଁ, ଟିକିଏ ଶିଘ୍ର କରିଦେଇ ଯାଅ ଭଲା ।

ବ୍ରାହ୍ମଣ—ଅରେ ବସ ବସ । ପକା ପିଢା ପକା [ପିଢା ପକାଇ ବସିବା]
ଓ ବସ୍ତ୍ର ର ବସ୍ତ୍ର, ଶୁକ୍ଲାମ୍ବରଧରଂ ବସ୍ତ୍ରୁ ର ଶଶିବର୍ଣ୍ଣଂ ଚତୁର୍ଭୁଜଂ,
ପ୍ରସନ୍ନ ବଦନଂ ଧ୍ୟେୟ-

ପ୍ରଥମ—କହୋ ନନା ! ଏ କଣ କରୁଛ ? ବାଟରେ କଣ ଶ୍ରାଦ୍ଧ କରୁଛ ?

ବ୍ରାହ୍ମଣ—[ଚମକି ପଡ଼ି] ଏଁ [କ୍ରନ୍ଦନ ସ୍ୱରେ] ବାବା ତୁମ୍ଭଙ୍କୁ ସନ୍ଧୁ ଦେବ ମୋତେ ଛାଡି ଦିଅ, ମୁଁ ଅଉ ମୁଦ୍ଧକୁ ଯାଇ ପାରିବି ନାହିଁ । ମୁଁ ଏ ରାଜ୍ୟ ଛାଡି ପଳାଉଛି, ମତେ ଛାଡିଦିଅ ।

ପ୍ରଥମ—[ସ୍ୱଗତ] ବ୍ରାହ୍ମଣ ବୋଧହୁଏ ଯୁଦ୍ଧ ଭୟରେ ' ଗୁଙ୍ଗି ଲୁଙ୍କିନା ' ଘରଦ୍ୱାର ଛାଡ ପଳାଉଛି ? ଟିକିଏ ଫିକର କର ଏତକ ଯାକ ଗୃହଜଳ, ପଇବା ମାରନେବ । ( ଦ୍ୱିତୀୟଙ୍କୁ ଠାରିବା ) (ପ୍ରକାଶ୍ୟ) ଅହେ ନନା, ଅମେ କଣ କରିବା. କହିଲ ଭଲ ? "ଗୁଙ୍ଗି ଲୁଙ୍କିନା" ଆମେ ତମକୁ କାହିଁକି ଛାଡଦେବୁ ? ଟକା ଜାଣିବେ "ଗୁଙ୍ଗି ଲୁଙ୍କିନା" ଆମ ମୁଣ୍ଡ ଆଉ ରହିବ ନାହିଁ ।

ବ୍ରାହ୍ମଣ—(କାନ୍ଦି କାନ୍ଦି) ଅରେ ଏତିକ ସବୁ ଗୃହଜଳ ନିଅ ମତେ ଛାଡି ଦିଅ ! (ଦୁହିଙ୍କ ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ କରି) ମୋତେ ଛାଡ଼ିଦିଅ । ବୁଢା ବ୍ରାହ୍ମଣଟା କଲ୍ୟାଣ କରୁଛି ।

ଦ୍ୱିତୀୟ— ଅହେ ନନା ! ତୁମେତ ପଳାଇ ଯାଉଛ । 'ତାନା କଣକି' ଏ ବାଛୁରୀଟା କେମିତିନେବ ?

ବ୍ରାହ୍ମଣ—ଆରେ ସେଇଟାକୁ ପଚ୍ଛେ ନିଅ, ଅମ୍ଭକୁ ଛାଡିଦିଅ ? ଦେଲେ ହିଁ ଅ ତାଙ୍କୁ ବାଛୁରୀଟା ଦେଇଦେ । (ଝିଅ ବାଛୁରୀ ଦେବା)

ଦ୍ୱିତୀୟ—(ବାଛୁରିଧରି)ହଁ ତେବେ ଯାଅ । ଏକଥା ଯେପରି 'ତାନା କଣକି' ଆଉ କାହାରି ଆଗରେ କହିବନାହିଁ । 'ତାନାକଣକି' ଚପଲ ଲୁଚି ପଳା ।

ବ୍ରାହ୍ମଣ—(ଯଜମାନ ପ୍ରତି) ହେଉବାପ ନରହିରି ଅସ, ବାଟରେ ଦକ୍ଷିଣା ଦେବ ।

(ବ୍ରାହ୍ମଣ, ଯଜମାନ, ବ୍ରାହ୍ମଣୀସ୍ତ୍ରୀ ଓ କନ୍ୟାପ୍ରସ୍ଥାନ)

ପ୍ରଥମ—ଆରେ ଭାଇ ! 'ତୁଙ୍ଗି ଲୁଙ୍କିନା' ମୁଁ ଏ ବାଛୁରୀ ନେଉଛିକି ତୁ ଏ ଗୃହଜଳ ପଇବାତକ ନେ ।

ଦ୍ୱିତୀୟ—ଆଉ ତେବେ କଣ ? 'ତାନା କଣକି' ମୁଁ କଲି ଅଦାୟ ତୁ ନେବୁ ବାଛୁରୀ ? 'ତାନା କଣକି' ଭାରି ନେଲୁ ବାଲା ।

ପ୍ରଥମ—ଅଚ୍ଛା ! ଦେଖିବା ଦେଖ ଭୁ କେମିତ ନବୁ, ନେତ ଦେଖି ।

( ଉଭୟଙ୍କର ବାଛୁରିଧର ଟଣାଟଣି ହେବା ସମୟେ )

( ଲଙ୍ଗଳଧର ଜଣେଚଷାର ପ୍ରବେଶ । )

ଚଷା—ଅରେ ଏକଣରେ ଏକେଣ ?

ପ୍ରଥମ—ଆହେ ଦେଖିବନ୍ତ, ମତେ ଦେଲ୍ଲ ବାଛୁରି, ଏ କହୁଛ ନେବ ।

ଦ୍ୱିତୀୟ—ଅରେ ଭଇ ! "ତାନାକଣକ" ମୁଁ ଅଯ୍ଲ କଲ୍, ଏ କହୁଛ ମୁଁ ନେବ ବାଛୁରି । "ତାନାକଣକି" ଏକା ଗୃପୁତାରେ ମୁଣ୍ଡ ଛିଣ୍ଡେଇ ଦେବ ଯେ । ହେଁ—

ଚଷା—ଅରେ ଥାଉ ଥାଉ ଗୃଲ ଘରକୁ ଗୃଲ ବୁଝା ବୁଝି ହେବା । ପେଟକୁ ଦାନା ମିଳୁନାହିଁ; ଫେରେ କଳ କରୁଛନ୍ତି ।

(ସମସ୍ତଙ୍କର ପ୍ରସ୍ଥାନ)

——C——

ତୃତୀୟଦୃଶ୍ୟ—କକ୍ଷ

(ରାଣୀ କମଳା ସୁନ୍ଦରୀଙ୍କର ପ୍ରବେଶ)

କମଳା—କାହିଁକି ସେ ବିଶ୍ୱାସ ଘାତକ ଏପରି ସମୟରେ ସେନାପତିଙ୍କୁ ଡ଼କାଇ ନେଇଛ, କିଛିସ୍ଥିର କର ପାରୁନାହିଁ । ନିଶ୍ଚୟ ଏଥିରେ କଛି ଗୁଢ ରହସ୍ୟ ଅଛି । ମନରେ କାହିଁକ ସନ୍ଦେହ ହେଉଛି; ରାଘବଜୀତ କଦାପି ବିଶ୍ୱାସ ଘାତକ ହୋଇନପାରେ । ନା- ରାଜଭକ୍ତ ଆଉ ଶ୍ରେଷ୍ଠ ରାଘବଜୀ ବିଶ୍ୱାସ ଘାତକ ? ଅସମ୍ଭବ । ଯାହାହେଉ ବର୍ତ୍ତମାନ ଭାବିଲେ ଫଳନାହିଁ । ସେନାପତି ଫେରିଲେ ସବୁ ଜଣା ପଡ଼ବ ।

(ଜଣେ ପ୍ରହରୀ ବ୍ୟସ୍ତଭାବେ ପ୍ରବେଶ)

ପ୍ରହରୀ—ମହାରାଣୀ ! ସର୍ବନାଶ ଉପସ୍ଥିତ । ବିଳାସପୁରର ରାଜା ବହୁ ସଂଖ୍ୟକ ସୈନ୍ୟ ନେଇ ରାଜ୍ୟର ଗୃରିଆଡେ ଘେରି ପକେଲେଣି ।

### ଅମରସିଂହ ।



କମଳା – ସେନାପତି ଫେରି ଆସିଲେଣି ତ ?

ପ୍ରହରୀ – ନା- ଦେଖା ତାଙ୍କର ଏପର୍ଯ୍ୟନ୍ତ ଦେଖାନାହିଁ ।

କମଳା – କଣ ! ଫେରି ନାହାନ୍ତି ? ଅଚ୍ଛା ସୈନମାନେ କେଉଁଠାରେ ଅଛନ୍ତି ?

ପ୍ରହରୀ – ସମସ୍ତେ ନିଜ ନିଜ ଘରକୁ ଯାଇଛନ୍ତି, କେବଳ ପାଞ୍ଚଜଣ ମାତ୍ର ସୈନ୍ୟ ଦୁର୍ଗ ଦ୍ୱାରରେ ଅଛନ୍ତି ।

କମଳା – ଅଚ୍ଛା ତୁ ଦୁର୍ଗ ମଧ୍ୟକୁ ଯା ମୁଁ ତାହାର ବନ୍ଦୋବସ୍ତ କରୁଛି ।

(ପ୍ରହରୀର ପ୍ରସ୍ଥାନ)

ତେବେ କଣ ମୋର ଆଶଙ୍କା ସତ ହେଉଛି ପ୍ରଭୁଭକ୍ତ ରଘୁବଂଶ ରାଜଦ୍ରୋହୀ ବିଶ୍ୱାସ ଘାତକ ! ନା ନା ଅସମ୍ଭବ ସମ୍ପୂର୍ଣ୍ଣ ଅସମ୍ଭବ । – ତେବେ ଏହାର କାରଣ କଣ ? (ଭାବି) ହିଁ-ବୁଝିଛି ! ବୋଧହୁଏ ବିଶ୍ୱାସ ଘାତକ ବିଜୟସିଂହ ଷଡ଼ଯନ୍ତ୍ର କରି ସେନାପତିଙ୍କୁ ବନ୍ଦୀ କରି ଏହି ଅବସରରେ ପ୍ରତିହିଂସା ସାଧନ ପାଇଁ ସାହାପୁର ଆକ୍ରମଣ କରିବାକୁ ଆସିଛି । କିନ୍ତୁ ଜାଣିରଖ ବିଜୟସିଂହ ! କମଳା ସୁନ୍ଦରୀଙ୍କୁ ବନ୍ଦୀ କରିବାତ ଦୂରର କଥା । ତାର ଛାୟା ସୁଦ୍ଧା ସ୍ପର୍ଶ କରି ପାରିବୁ ନାହିଁ । ଭାବିଛୁ କମଳା ସୁନ୍ଦରୀ ତୋର କୃପା ଭିକ୍ଷାର ପ୍ରତ୍ୟାସିକା ହେବ, ବୃଥା ଆଶା ! କମଳା ସୁନ୍ଦରୀ ତୋପରି ଭୀରୁ ନୁହେଁ । କମଳା ବୀରାଙ୍ଗନା ରାଜପୁତ ରମଣୀ । ରାଜପୁତ ରମଣୀ ଜନ୍ମ-ଭୂମିର ସ୍ୱାଧୀନତା ପାଇଁ ଯୁଦ୍ଧ କରିବାକୁ ଜାଣେ । ନିଜର ମାନ ରକ୍ଷା ପାଇଁ ଅକାତରେ ପ୍ରାଣ ବଳି ଦେଇ ପାରେ । ତୋପରି ପାଷଣ୍ଡ ହସ୍ତେ ଧରା ଦେବାଠାରୁ ମୃତ୍ୟୁ କମଳା ପକ୍ଷେ ସହସ୍ର ଗୁଣେ ଶ୍ରେୟସ୍କର । ବିଜୟସିଂହ ଅତି ସାମାନ୍ୟ ରାଜପୁତ

ରମଣୀ ଠାରୁ କ୍ଷତ୍ରିୟର ସେହି ମହାମନ୍ତ୍ର ଶିଖିବୁ । "ମନ୍ତ୍ରର ସାଧନ ଅବା ଶରୀର ପତନ" ମା ଚଣ୍ଡି ! ତୁମ୍ଭେ ମୋର ଭରସା !

( ପୁରନାରୀମାନଙ୍କର ପ୍ରବେଶ )

ପୁରନାରୀ—ମା, ମା, ଏକଣ ? ଏକିଶବ୍ଦ ?

ରାଣୀ – ମା ମାନେ ! ପୁଣି ବଳାସପୁରର ରାଜା ଯୁଦ୍ଧକରି ମୋତେ-ଧରି ନେବାକୁ ଆସିଅଛି ।

ପୁରନାରୀ – କଣ କରିବା ମା ! ବର୍ତ୍ତମାନତ ସେ ତୁମ୍ଭଙ୍କୁ ଧରିନେବ ଓ ଅମ୍ଭମାନଙ୍କ ଉପରେ ଅତ୍ୟାଚାର କରିବ ! ଉପାୟ କଣ ମା ?

କମଳା – ଉପାୟ ଅଛି । ମା ମାନେ ତୁମ୍ଭେମାନେ କଣ ରାଜପୁତ ରମଣୀନୁହଁ ? ତୁମ୍ଭମାନଙ୍କର ପ୍ରତ୍ୟେକ ଧମନୀରେ କି ବୀରରା-ଜପୁତ ରକ୍ତ ପ୍ରବାହିତ ହେଉନାହିଁ ?

ପୁରନାରୀ – ହିଁ ମା ଅମ୍ଭେମାନେ ରାଜପୁତ ରମଣୀ । ମୃତ୍ୟୁମୁଖରେ, ବିପଦସମ୍ମୁଖରେ ସ୍ଥିର ଓ ଅଚଳ ।

କମଳା – ତେବେ ଆଜ ଚିନ୍ତାକଣ? ରାଜପୁତ ରମଣୀ ଲାଞ୍ଛନା ଭୋଗ କରିବା ପୂର୍ବରୁ ମୃତ୍ୟୁକୁ ଅମ୍ଳାନ ବଦନରେ ଆଲିଙ୍ଗନ କରିଥା-ରେ । ତୁମ୍ଭେମାନେ କଣ ମରିବାକୁ ଜାଣନାହିଁ ? ତେବେ ମାନରକ୍ଷାର ଉପାୟ ଅଛି ! ଉପାୟ ରାଜପୁତ ବୀରବାଳାର ଶେଷ ଆଶ୍ରୟ ଜ୍ୱଳନ୍ତ ଅନଳ କମ୍ବା ଜଳପୂର୍ଣ୍ଣ ପୁଷ୍କରିଣୀ । ଯାଅ ମା ମାନେ ।

ପୁରନାରୀ – ତୁମ୍ଭେ କଣ କରିବ ମା ?

କମଳା – ମୁଁ ? ଅବଶ୍ୟ ମାନରକ୍ଷା କରିବ । ମୋର ବ୍ରତ ଉଦ୍‌ଯାପନ ହୋଇନାହିଁ ! ଶତ୍ରୁନିକଟକୁ ଯାଅ, ଶୀଘ୍ର ପ୍ରସ୍ତୁତ ହୁଅ ।

ଶତ୍ରୁ ଦୁର୍ଗ ମଧ୍ୟରେ ପ୍ରବେଶ କଲେ ଅମ୍ଳାନ ବଦନରେ ରାଜପୁତ ବୀରବାଳାର କୀର୍ତ୍ତି ଗାଥା ଗାଇ ଗାଇ ପ୍ରଜ୍ଜ୍ୱଳିତ ଚିତ୍ତାଗ୍ନିରେ ଅନ୍ତିମ ଆଶ୍ରୟ ନେବ, ଯାଅ ମା ମାନେ !

( ରମଣୀ ମାନଙ୍କର ପ୍ରସ୍ଥାନ )

କାହିଁ ମୋର ତରବାରି ! ( ତରବାରୀ ଆଣି ) ଦେଖ ତରବାରି ! ମହାରାଜା ତତେ ବଡ ଆଦରରେ, ବଡ ଯତ୍ନରେ ରଖି ଶତ୍ରୁର ଶୋଣିତ ଉପହାର ଦେଉଥିଲେ ! ଆଜ ପୁଣି ସେହି ସ୍ୱର୍ଗୀୟ ମହାରାଜାଙ୍କର ହତଭାଗିନୀ ପତ୍ନୀ ତୋତେ ଶତ୍ରୁର ଶୋଣିତ କମ୍ବା ତାର ପରିବର୍ତ୍ତେ ନିଜର ଶୋଣିତ ଉପହାର ଦେବ ।

( ନେପଥ୍ୟେ ଜୟଧ୍ୱନି ଶୁଣି )

ଏକଣ ? ଶତ୍ରୁ ଯେ କ୍ରମେ ନିକଟତର ହେଲେଣି, ଯାଏଁ, ସୈନ୍ୟମାନଙ୍କୁ ଏକତ୍ରିତ କରେ ! ( ପ୍ରସ୍ଥାନ )

—✲—

ଚତୁର୍ଥଦୃଶ୍ୟ "ଗ୍ରାମ୍ୟପଥ"

( ବୀର ପରିଚ୍ଛଦରେ ରାଣୀ କମଳାସୁନ୍ଦରୀ ପ୍ରବେଶ )

କମଳା – ରାଜ୍ୟବାସି ! ନଗରବାସି ! ଗ୍ରାମବାସୀ ! ଉଠ, ଉଠ, ଜାଗ, ଜାଗ, ଆଜ ତୁମ୍ଭମାନଙ୍କର କି ବିପଦର ଦିନ ତାହାକି ତୁମ୍ଭେମାନେ ବୁଝିପାରୁ ନାହିଁ ? ଉଠ, ଉଠ, ଧର ଅସି, ପିନ୍ଧ ବର୍ମ, ନିଅ ଧନୁଶର ! ଆପଣାର ସ୍ତ୍ରୀ ପୁତ୍ର ସଂସାର ରକ୍ଷା କର । ଦେଖ ତୁମ୍ଭମାନଙ୍କର ସ୍ୱର୍ଗୀୟ ମହାରାଜାଙ୍କର ମହାରାଣୀ ଚିରଦୁଃଖିନୀ ମୁଁ । ଉଠ ବୀରମାନେ, ଜନ୍ମଭୂମିର ସ୍ୱାଧୀନତା ରକ୍ଷାକର । ସ୍ତ୍ରୀ ପୁତ୍ରଙ୍କର କୁଳ, ମାନଧର୍ମ ରକ୍ଷାକର ।

ତୁମ୍ଭମାନଙ୍କ ଦେବପ୍ରତିମ ମହାରାଜାଙ୍କର ଗୁପ୍ତହତ୍ୟାକାରୀ; ବିଳାସପୁରର ନରାଧମ ରାଜା ଆସି ଦୁର୍ଗଦ୍ୱାର ଆକ୍ରମଣ କଲାଣି ରାଜପୁତବୀର ହୋଇ କିପରି ତୁମ୍ଭର ଜନ୍ମଭୂମିର ଏଲାଞ୍ଛନା ଆଖିଆଗରେ ଦେଖିବ ? ଆସ; ହୃଦୟବାନ୍ଧ; କ୍ଷମତା ବିସ୍ତାର କର; ଶତ୍ରୁର ଶାସ୍ତି ବିଧାନକର । ସାହାପୁରର ରାଜାରାଣୀ ଆଜ ଏ ସମରରେ ତୁମ୍ଭର ଅଗ୍ରଣୀ । ଆସ; ଆସ, ଜାଗ; ଜାଗ ।

( ଗ୍ରାମବାସୀମାନଙ୍କର ପ୍ରବେଶ )

ଗ୍ରାମବାସୀ — ମହାରାଣୀ ! କାହିଁକି ଆମ୍ଭମାନଙ୍କୁ ଆହ୍ୱାନ କଲେ ?

କମଳା — ପୁତ୍ରଗଣ ! ମୁଁ କି ତୁମ୍ଭମାନଙ୍କର ମହାରାଣୀ ନୁହେଁ ? ଯାହାଙ୍କ ଇଙ୍ଗିତରେ ପଲକମାତ୍ରକେ ସହସ୍ର ସହସ୍ର ତରବାରି ଝଲସି ଉଠୁଥିଲା ସେହି ମହାରାଜାଙ୍କ ପତ୍ନୀଙ୍କ ଇଙ୍ଗିତରେ କି ସେହିପରି ତରବାରି ଝଲସି ଉଠିବ ନାହିଁ ? ତୁମ୍ଭେମାନେ କି ସାହାପୁରର ସନ୍ତାନ ନୁହଁ ? ଦେଶର ମାନ, ଜାତିର ମାନ, ଧର୍ମର ମାନ ରକ୍ଷା କରିବା କି ତୁମ୍ଭମାନଙ୍କର କର୍ତ୍ତବ୍ୟ ନୁହେଁ ?

ଗ୍ରାମବାସୀ — ନିଶ୍ଚୟ କର୍ତ୍ତବ୍ୟ; ଜୟ ମହାରାଣୀଙ୍କର ଜୟ ।

କମଳା — ପୁତ୍ରଗଣ ! ଯଦି ତୁମ୍ଭେମାନେ ମହାରାଜାଙ୍କ ଅନ୍ନରେ ପ୍ରତିପାଳିତ; ତୁମ୍ଭମାନଙ୍କର ମହାରାଣୀ କି ତୁମ୍ଭର ସାହାଯ୍ୟ ଦାବି କରି ନପାରେ ? ତେବେ ସେହି ମହାରାଣୀଙ୍କର ମାନ ସମ୍ଭ୍ରମ ଓ ଜନ୍ମଭୂମିର ଉଦ୍ଧାର ସାଧନ ପାଇ ଅସିଧାରଣ କରିବାକୁ ହେବ । ରାଜଭକ୍ତି ଦେଖାଇବାକୁ ହେବ । ନିଜ ନିଜର କୌଶଳ, ବଳ ବୀର୍ଯ୍ୟ ଦେଖାଇବାକୁ ହେବ । ଶତ୍ରୁର ମସ୍ତକରେ ପଦାଘାତ କରିବାକୁ ହେବ ।

ଗ୍ରାମବାସୀ — ଜୟ ମହାରାଣୀଙ୍କର ଜୟ । ମହାରାଣୀଙ୍କପାଇଁ ଅମ୍ଭେମାନେ ପ୍ରାଣଦେବାକୁ ପ୍ରସ୍ତୁତ ଅଛୁ ।

କମଳା — ତେବେ ଉଠ ବୀରଗଣ ! ସାହାପୁରର ବୀରପଦ ରଜକର ତୁମ୍ଭେମାନେ ଅଶାଧାଯ, ମାତଉଠ; ମା ଚଣ୍ଡୀଙ୍କର ନାମ ସ୍ମରଣ କର ଯୁଦ୍ଧରେ ପ୍ରବୃତ୍ତହୁଅ ।

ଗ୍ରାମବାସୀ — ଜୟ ମହାରାଣୀଙ୍କର ଜୟ ! ସତ୍ୱର ଚାଲନ୍ତୁ ମାଁ । ଅଉ ବିଳମ୍ବରେ ପ୍ରୟୋଜନ ନାହିଁ ।

କମଳା — ଆସ ବୀରଗଣ ! ମରଣକୁ ଭୟକରନାହିଁ । ବିଧାତାଙ୍କ ସୃଷ୍ଟିରେ ଦିନେ ଜନ୍ମ, ଦିନେ ମରଣ; ତେଣୁ ମହତ କାର୍ଯ୍ୟ ସାଧନପାଇଁ ପ୍ରାଣ ଉତ୍ସର୍ଗ କର ଆସ; ପ୍ରାଣପଣେ ଯୁଦ୍ଧ କରି ନିଜର ରକ୍ତଦାନଦେଇ ସଂଗ୍ରାମକ୍ଷେତ୍ରରୁ ମହୋଲ୍ଲାସେ ବିଜୟଲକ୍ଷ୍ମୀଙ୍କୁ ଝିଙ୍କିଆଣିବା । ନୋହିଲେ ବୀରର ଅନ୍ତିମ ଆଶ୍ରୟ ଏହି ଶାଣିତ କୃପାଣ । ଶତ୍ରୁ ଯଦି ଆସି ସାହାପୁର ଆକ୍ରମଣ କରିବ, ତେବେ ଅମ୍ଭମାନଙ୍କର ଏହି ଛାର ଜୀବନରେ କି ପ୍ରୟୋଜନ ? ଆସ,ନିଜର ବାହୁବଳରେ ଜନ୍ମଭୂମିର ସ୍ୱାଧିନତା ରକ୍ଷାକରିବା । ନୋହିଲେ ସମ୍ମୁଖ ସମରରେ ବୀରପରି ଆତ୍ମବଳି ଦେବା; ଜୟମା ରଣଚଣ୍ଡି ।                    ( ପ୍ରସ୍ଥାନ )

ସମସ୍ତେ — ଜୟ ମହାରାଣୀଙ୍କର ଜୟ ।

( ସମସ୍ତଙ୍କର ପ୍ରସ୍ଥାନ )

—ঃ০ঃ—

ପଞ୍ଚମଦୃଶ୍ୟ "ଉଦ୍ୟାନ"

( ରୋହିଣୀ ଓ ବିମଳାର ଦଣ୍ଡାୟମାନ )

ରୋହିଣୀ — ବିମଳା । ପ୍ରାୟ ମାସେ ଭିତର ମାମୁଘରେ ଥିଲି, କାହିଁ ଦିନେହେଲେତ ଏପରି ଆନନ୍ଦ ଅନୁଭବ କରିନାହିଁ ? ବାସ୍ତବିକ

ମୁନି ଋଷିମାନେ କହୁଛନ୍ତି " ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" ଅହା ଫୁଲଉଦ୍ୟାନଟିରେ କେତେ ମଧୁମୟୀ ସ୍ମୃତି ଜଡ଼ିତ ରହିଛି । ଆଜି ଦେଖି ଉଦ୍ୟାନଟି କି ଅପୂର୍ବ ଶୋଭା ଧାରଣ କରିଅଛି, କେତେଜାତିରେ କେତେ ଫୁଲ ଫୁଟିଛି ଅହା ମନ୍ଦସମୀରଣ ସାହାଯ୍ୟରେ ସୁରଅଟେ କି ସୁବାସ ଫୁଟି ଉଠୁଛି, ପୁଣି ଭଅଁରଟି ଫୁଲେ୨ ଉଡ଼ି ଗୁଣୁ୨ ଗୁଞ୍ଜନରେ ଚଲୁଛିଁ ଭଙ୍ଗରେ କି ଏକ ମନୋହର ସ୍ୱର ଲହରୀ ଖେଳି-ଦେଇଛି, ସବୁଯେପରି ଏକ ନୈସର୍ଗିକ ସୁବାସର ସମାବେଶ ।

କମଳା—କେଜାଣିଲୋ ସଖୀ ମୁଁ ତ କାହିଁ କି କିଛି ନୂଆ ଦେଖୁନାହିଁ ସେହିଫୁଲ, ସେହିପବନ, ସେହିଉପବନ ସବୁ ପୂର୍ବପରି । ତୋର ବୋଧହୁଏ କିଛି ନୂଆଭାବ ହୋଇଛି ନୋହିଲେ ତୁ ସବୁ ଜିନିଷକୁ ଏପରି ପରିବର୍ତ୍ତନ ଦେଖୁନୁ କାହିଁକି ?

ରୋହିଣୀ—ଆଲୋ ନା ! ଭୂପରି ବରାବର ଏହିଠାରେ ଅଛୁ । ତୋ ପ୍ରତି ଏହି ଉଦ୍ୟାନର କିଛି ନୂତନ ନାହିଁ । ମୁ ଯେ ମାସେ ହେଲା ଏହାକୁ ଦେଖି ନଥିଲି ।

କମଳା—ଆଲୋ ମୋ ଆଗରେ ଲୁଚେଇଲେ କଣ ମୁ ତୋ ମନ କଥା ଜାଣି ପାରିବି ନାହିଁ ?

ରୋହିଣୀ—କମଳା ! ତୁ ବଡ ଦୁଷ୍ଟ ହୋଇଗଲୁଣି । ଯେଉଁ ପଦାର୍ଥ ଠିକ୍ ଯେ ଭଲପାଏ, ତାକୁ କିଛିଦିନ ଦେଖିବାକୁ ନପାଇ ପୁଣି ଦେଖିଲେ ତାପ୍ରତି ତାର ବେଶି ଶ୍ରଦ୍ଧା ହୁଏ ।

କମଳା—ନା ସଖି, ମତେ ଯେପରି ଲାଗୁଛି ତୋର କିଛି ନୂଆ ଭାବ ଜାଗିଛି, ଆଉ ତୋର ପୂର୍ବପରି ଅବସ୍ଥା ନାହିଁ ।

ରୋହିଣୀ—ଅଚ୍ଛା କମଳା ! ବର୍ତ୍ତମାନ ସେସବୁ କଥାଛାଡ ! ଶୁଣିଛୁତ ଉଲାସ ପୁର ରାଜା ଆମ ଦେଶକୁ ଚଢ଼ାଉ କରିବାକୁ ଆସୁଛି ।

ବିମଳା—ହଁଲୋ ହଁ । ଶୁଣୁଛି, ମା ନିଜେ ଯୁଦ୍ଧ କରିବାକୁ ଯାଉଛନ୍ତି ।

ସ୍ନେହଣୀ—ବିମଳା ! ଆମେ ଚାଲ ସେହି ସ୍ଥାନକୁ ଯିବା । ଏଠାରେ ରହି କଅଣ କରିବା ?

ବିମଳା—ଅଲୋ ! ଆମକୁ କଣ ଯୁଦ୍ଧ ଆସେ ଯେ ଆମେ ଯିବା ?

ସ୍ନେହଣୀ—ଅଲୋ ! ସେଠାରେ କଣ ଖାଲି ଯୁଦ୍ଧ କରିବା ଦରକାର ଆଉ କଣ କିଛି କରିବାକୁ ନାହିଁ ? ମନୁଷ୍ୟର ହିତ ସାଧନ କରିବା ପାଇଁ ରଣ ସ୍ଥଳହିଁ ପ୍ରଶସ୍ତ କ୍ଷେତ୍ର । ବିମଳା ଦେଖେ ମା ଆସୁଛନ୍ତି ? ଚାଲ ଆମେ ତାଙ୍କୁ କହିବା ।

( କମଳା ସୁନ୍ଦରୀଙ୍କର ପ୍ରବେଶ )

ମାଁ ! ସତେ ଚନ୍ଦ୍ରାସପୁର ରାଜା ଆମ ଦେଶକୁ ଚଢ଼ାଉ କରିବାକୁ ଆସୁଛନ୍ତି ?

କମଳା—ହଁଲୋ ମାଁ ! ବିଶ୍ୱାସଘାତକ ଗୁପ୍ତ ଭାବରେ ତୋର ସ୍ୱର୍ଗୀୟ ପିତାଙ୍କୁ ହତ୍ୟାକରି ତାହାର କ୍ରୋଧ ଶାନ୍ତ ହୋଇନାହିଁ, ପୁଣି ସେନାପତି ରାଘବଜୀଙ୍କୁ ବନ୍ଦୀ କରି ଏହି ସୁଯୋଗରେ ମୋତେ ଧରିନେବା ପାଇଁ ରାଜ୍ୟ ଆକ୍ରମଣ କରୁଛି ।

ସ୍ନେହଣୀ—ତେବେ ଆମ୍ଭେମାନେ କଣ କରିବା ମାଁ ?

କମଳା—ଭୟ ନାହିଁ ମାଁ ! ଅନାଥର ନାଥ, ଅସହାୟର ସହାୟ ଦୁଃଖୀର ସମ୍ବଳ ସେହି ବିପଦ ବାରଣ ହରି ଆମ୍ଭମାନଙ୍କୁ ରକ୍ଷା କରିବେ ମୁଁ ସମସ୍ତ ସୈନିକ ଓ ପ୍ରଜାମାନଙ୍କୁ ଘେନି ନିଜେ ଯୁଦ୍ଧକୁ ଯାଉଛି । ଜୟ ପରାଜୟ ବିଧାତାଙ୍କ ହାତରେ ।

ସ୍ନେହଣୀ—ମାଁ ! ମୁଁ ସେହି ଯୁଦ୍ଧସ୍ଥଳକୁ ଯିବି ?

କମଳା—ନା ମା ତୁ କଣ ଯୁଦ୍ଧକରି ପାରିବୁ ?

ସ୍ନେହଣୀ—ମା ! ସେଠାରେ କଣ ଖାଲି ଯୁଦ୍ଧର ପ୍ରୟୋଜନ ? ଆଉ କଣ କିଛି କରିବାର ନାହିଁ ମାଁ ?

କମଳା—ଆଉ କଣ ଅଛି ମାଁ ? ସେ ସ୍ଥାନର ଦୃଶ୍ୟ ବଡ଼ ଭୟଙ୍କର ସେଠାରେ ତୁ ଯାଇ କଅଣ କରିବୁ ମାଁ ?

ରୋହଣୀ—କାହିଁକି ମାଁ ? ତୃଷ୍ଣାତୁରଙ୍କୁ ଜଳ ଦେବ, ମୁମୂର୍ଷୁର ସେବା କରିବ, ବଳଲାଙ୍କ କ୍ଷତ ବିକ୍ଷତର ଶୁଶ୍ରୂଷା କରିବ, ମାନବର ସେବା କରିବ ଏତିକି ମୁଁ କରି ପାରିବ ?

କମଳା—ରୋହଣୀ ! ତୋପରି କନ୍ୟାରତ୍ନ ଲଭକରି ମୋର ଜୀବନ ସାର୍ଥକ ହୋଇଛି । ତୋର ହୃଦୟ ଏଡ଼େ ଉଚ୍ଚ ! ହଉ ମାଁ ପରୋପକାରରେ ମାନବର ସେବାରେ ତୋର ଏ ଅଗ୍ରହରେ ବାଧା ଦେବନାହିଁ । ତୋର ଯାହା ଇଚ୍ଛା ତା କର ମାଁ ।

(ପ୍ରସ୍ଥାନ)

ରୋହଣୀ—ଅ କମଳା ! ଯୁଦ୍ଧ ସ୍ଥଳକୁ ଯିବାର ଆୟୋଜନ କରିବା ।

କମଳା—ଚାଲ ସଖି ଚାଲ ।

( ଉଭୟଙ୍କର ପ୍ରସ୍ଥାନ )

***

ଷଷ୍ଠଦୃଶ୍ୟ—ରାଜବାଟୀ ସମ୍ମୁଖ

( ରାଣୀ କମଳା ସୁନ୍ଦରୀଙ୍କର ପ୍ରବେଶ )

କମଳା—ହେଦେବ ଦିନ ନାଥ ! ଜାଗ ଜାଗ ! ଥରେ ଦେଖାଦିଅ ଏ ଦୀନାକୁ । ଜଗାଅ ଜଗତ ନେତ୍ର ଜଗତ ଲୋଚନ ! ଦିଅ ନବ ବଳ ବସୁଧାରେ ବସୁଧା ଆଶ୍ରିତ ତବ ଦେବ । ତୁମ୍ଭେ ଅଟ ମହା ଶୂନ୍ୟ ଅନନ୍ତ ପ୍ରସାର. ବିଭୂଷିତ ଜ୍ୟୋତିଷ୍କମଣ୍ଡଳେ-ମଣ୍ଡଳର ମଧ୍ୟବିନ୍ଦୁ ନାଥ, ତୁମ୍ଭେ ମୂଳ ମଧ୍ୟ ଆକର୍ଷଣ । ସମ-ଭାବେ ପାଳୁଛ ସୃଜନ ବିଧାତାର, ସମନେତ୍ରେ ଦେଖୁଛ ଜଗତ ହେର ନେତ୍ର କୋଣେ ତବତନୟାକୁ, କରୁଅଛ ଅବାହନ

( କରଯୋଡ଼ )

ଜବା କୁସୁମ ଶଂକାଶଂ କାଶ୍ୟ ପେୟ ମହାଦ୍ୟୁତି,
ଧାନ୍ତାରଂ ସର୍ବ ପାପଘ୍ନ ପ୍ରଣତୋସ୍ମି ଦିବାକର,
ଜୟ ଜଗତ ଲୋଚନ ଜଙ୍ଗମ ପାଳଣ
ଜୟ ଜଶୋବନ୍ତ ଜୟ ଜ୍ୟୋତିସ୍ୱବରଣ ।
ଜୟ ଜୟ ସଂରକ୍ଷଣ ବିପଦ ଭଞ୍ଜନ,
ଜୟ ପାପ ଦହନ କାଳ ଭୟ ବାରଣ ।
ଜୟ ପରମାର୍ଜନ ପୂର୍ଣ୍ୟ ଶରଣ ଧନ,
ଜୀବ ଇଷ୍ଟପୂରଣ ବିଶିଷ୍ଟ ବିଲୋକନ ।
ଜୟନ୍ତ ଜଗତଗୁରୁ ଭକ୍ତାଶ୍ରୟଧନ,
ଭବ ଭୟ ତାରଣ ପୂର୍ଣ୍ଣ ବ୍ରହ୍ମ ପ୍ରଧାନ । ( ପ୍ରଣାମ )

ଦିବସର ପ୍ରଥମ ପ୍ରହର ସମୁପୋସ୍ଥିତ, ସୈନ୍ୟମାନେ ସଜ୍ଜିତ ହୋଇ ଅସିବାକୁ ଯାଇ, ଗଲେ କେଉଁ ଆଡେ ? ଏଥିତ ଶନ ରୁ ତରବାରି ଅଂଶୁ ମାଳୀର ଅଂଶୁରେ ଅଂଶୁକାୟ ସଦୃଶ ଝଳ ମଲ ହୋଇ ଉଠିଲାଣି । କଣ କରିବ; ମୁହିଁ ଏକାକୀ ଭୟ କଣ ? କ୍ଷତ୍ରିୟ ରମଣୀ ମହାରାଜ ପୃଥ୍ୱୀରାଜ ସିଂହଙ୍କ ପତ୍ନୀ ହୋଇ; ପୁଣି ଏହ ସର୍ବଂସହା ଭାରତ ଜନନୀ ପୃଷ୍ଠରେ ଜନ୍ମ ଲଭି, ସେହ ବିଶ୍ୱାସଘାତକ ନରାଧମକୁ ଭୟ କରିବି ? ଏହା କଦାପି ନୁହେଁ । ( ନେପଥ୍ୟକୁ ଚାହିଁ ) ଏହଯେ ମୋର ସୈନ୍ୟ ଗଣ ସଜ୍ଜିତ ହୋଇ ଆସୁ ଅଛନ୍ତି ।

( ସ୍ତ୍ରୀ ସୈନ୍ୟମାନଙ୍କର ଗୀତ ଗାଇ ଗାଇ ପ୍ରବେଶ )

ଗମ୍ଭୀର ଗର୍ଜ୍ଜନ ବାଜେ ମୃଦଙ୍ଗ,    ଗର୍ଜ୍ଜିତ ଘର୍ଷଣେ ଶତ୍ରୁ ଅତଙ୍କ
ଅତ୍ରସ୍ତ୍ର ଅସ୍ତ୍ର ଦ୍ୱନ୍ଦ୍ୱ ମିଶା ମିଶି,    ରକ୍ତେ ରକ୍ତେ ଲକ୍ଷ୍ୟ ହବାନଣି
ଜୀବନେ ଭାରତ ମରଣେ ସ୍ୱର୍ଗ, ଅସ୍ତ୍ରତ ସ୍ୱର୍ଗେ ଅପବାଦ ଅଙ୍ଗ ।୧।

ହସି ହସି ଦେବୁ ପ୍ରାଣ; ନାହିଁ ଦେବୁ କେବେ ମାନ;
ଖଣ୍ଡିତ ଅଗତ ମଣ୍ଡିତ ଯଶ ଦଳିତ ଚରଣେ ଶତ୍ରୁ ଭ୍ରୂଭଙ୍ଗ ୨ ।

କମଳା — ଵୀର ଭଗ୍ନୀ ଗଣ ! ଶୃଙ୍ଗ ତୂର୍ଯ୍ୟ ନାଦରେ ଦଶ ଦିଗ ନିନାଦିତ କରି ସମର କ୍ଷେତ୍ରରେ ପ୍ରବେଶ କରିବ । ଜୟ ମା ଚଣ୍ଡି

ସମସ୍ତେ — ଜୟ ମା ଚଣ୍ଡି । ( ସମସ୍ତଙ୍କର ପ୍ରସ୍ଥାନ )

ସପ୍ତମ ଦୃଶ୍ୟ—ଯୁଦ୍ଧକ୍ଷେତ୍ରର ଏକ ପାର୍ଶ୍ୱ ।

( ଜଳ ପାତ୍ର ହସ୍ତେ ରୋହିଣୀ ଓ ବିମଳା ପ୍ରବେଶ )

ରୋହିଣୀ— ବିମଳା ! କି ଭୟଙ୍କର ଦୃଶ୍ୟ ! ମୋର ସର୍ବାଙ୍ଗ ରୋମାଞ୍ଚିତ ହୋଇ ଯାଉଅଛି । ମନୁଷ୍ୟ ହୃଦୟ ପୁଣି କି ଏତେ ନିଷ୍ଠୁର ? ପାଷାଣ ବଳି କର୍କଶ, ବଜ୍ରଠାରୁଁ ବଳି ଦୃଢ଼ । ସାମାନ୍ୟ ପାର୍ଥିବ ସମ୍ମାନପାଇଁ କି ଜଘନ୍ୟ ମଦିରାର ନିଶାରେ ମନୁଷ୍ୟ ମାତାଲ୍ ହୋଇ ଆପଣାର ଭାଇ ବନ୍ଧୁ ଆତ୍ମୀୟ ସ୍ୱଜନଙ୍କୁ ପ୍ରଫୁଲ୍ଲ ହୃଦୟରେ କାଟିପକାଉଛି । ସାମାନ୍ୟ ସ୍ୱାର୍ଥସିଦ୍ଧି ପାଇଁ ମାନବ ପୃଥିବୀରେ ରକ୍ତ ଗଙ୍ଗାର ପ୍ରବାହ ଛୁଟାଇ ଦେଉଛି । ଓଃ କି ଭୟାବହ ଦୃଶ୍ୟ ବିମଳା ! ସ୍ଥାନେ୨ ସ୍ତୂପୀକୃତ ଶବରାଶି । କାହିଁ ପୁଣି ଛିନ୍ନମସ୍ତକ, ଗଣ୍ଡି ଉପରେ ଗଣ୍ଡି ପଡିଛି । ପୁଣି କାହିଁ କଣ୍ଠାଗତ ପ୍ରାଣ ମୁମୂର୍ଷୁର ଆର୍ତ୍ତନାଦ । ସେ ଆର୍ତ୍ତନାଦ ପ୍ରତି ଦୃଷ୍ଟି ଦଉଛି କିଏ । ଖାଲି ହାଣ, ମାର, କାଟ" । ଓହୋ ! ପ୍ରକୃତ ଦେବୀ କି ଭୈରବୀ ମୂର୍ତ୍ତି ଧାରଣ କରି ଅଛନ୍ତି ? ମନୁଷ୍ୟ ପୁଣି ବିଧାତାଙ୍କର ସର୍ବୋତ୍କୃଷ୍ଟବୋଲି ଗର୍ବକରେ । କେଉଁ ଗୁଣରେ ମନୁଷ୍ୟ ପଶୁଠାରୁ ଶ୍ରେଷ୍ଠ, ବିମଳା ? ମନୁଷ୍ୟ ନିଜର ବୁଦ୍ଧିର ଗର୍ବକରେ । ଏହିକି ତାର ବିବେକ । ନିଜର

ସ୍ୱତନ୍ତ୍ରତା ପ୍ରବୃତ୍ତିର ତୃପ୍ତି ସାଧନ ପାଇଁ ମନୁଷ୍ୟ ବିଧାତାଙ୍କର ସୃଷ୍ଟିର ଅମୂଲ୍ୟ ସମ୍ପଦକୁ ଅମ୍ଳାନ ବଦନରେ ନିକ୍ଷେପିତ କରି ଦେଉଛି । ଗୃଲ ବିମଳା ! ଦେଖିବା ଜଳ ଦାନ କରିବା ସେବା ଶୁଶ୍ରୂଷାକରି, ଯଦି କୌଣସି ମୁମୂର୍ଷୁର ପ୍ରାଣ ରକ୍ଷା କରି ପାରିବା ।

ବିମଳା—ସତ୍ୟ ମନୁଷ୍ୟହିଁ ମନୁଷ୍ୟର ପ୍ରଧାନ ଶତ୍ରୁ । ନୋହିଲେ ବିଧାତାଙ୍କର ସୃଷ୍ଟି ଅମୃତ ମୟ ହୋଇ ଥାନ୍ତା । ଏମର୍ତ୍ତ୍ୟ ଭୂମି ନନ୍ଦନ କାନନରେ ପରିଣତ ହୋଇ ଥାନ୍ତା । ସ୍ତୁତ ସେକଥା ଭାବିଲେ କଣ ହେବ । ଆମରି କର୍ତ୍ତବ୍ୟ ଆମେ କରିଯିବା ।

( ଉଭୟଙ୍କର ପଦୋଗ୍ରରଣ କରିବା )

( ଅନ୍ୟ ଏକସ୍ଥାନରେ ଅମରସିଂହ ଭୂପତିତ )

ଅମର—ଓଃ କି ଯନ୍ତ୍ରଣା ଏହିଥର ପ୍ରାଣଗଲା, ଉଃ କି; ତୃଷା । ଭଗବାନ ଏ ଯନ୍ତ୍ରଣାରୁ ଉଦ୍ଧାରକର-

ରୋହଣୀ—(ଦଉଡ଼ ଯାଇ) ବିମଳା ଶୀଘ୍ର ପାଣି ଅଣ । ମୁଁ ବିଞ୍ଚୁ ଦେଉଛି ତୁ ମୁହଁରେ ସିଞ୍ଚିଦେ ଓ ଟିକିଏ ପିଆଇଦେ ।

(ରୋହଣୀ ବିଞ୍ଚୁ ଦେବା ବିମଳା ପାଣି ଦେବା)

ଅମର—(ପାଣି ପିଇ) ଓଃ କିଶାନ୍ତି । (ଅସ୍ତେ ୨ ଉଠି ରୋହଣୀଙ୍କୁ ଗୃହିଁ) କିଏ ତୁମ୍ଭେମାନେ ? ଦେବୀ ନା ମାନବୀ ? ନା ତୁମ୍ଭେମାନେ ଦେବୀ ହେବ ? ତୁମ୍ଭେମାନେ ସ୍ତ୍ରୀଲୋକ ଏଠାକୁ ଅସିଲ କିପରି ?

ବିମଳା—ନା; ଆମ୍ଭେମାନେ ଦେବୀ ନୋହୁଁ ମାନବୀ । ବର୍ତ୍ତମାନ ସେକଥାର ପ୍ରୟୋଜନ ନାହିଁ । ଆପଣ ଟିକିଏ ବିଶ୍ରାମ କରନ୍ତୁ ଟିକିଏ ଭଲ ହୋଇଗଲେ ସବୁ କଥାହେବ ।

ଅମର—ନା- ଦେବୀଙ୍କ କୃପାରୁ ମୁଁ ସମ୍ପୂର୍ଣ୍ଣ ଭଲଅଛି। ତମାର ସମସ୍ତ କଷ୍ଟ ଦୂର ହୋଇଛି । (ସ୍ୱଗତ) ଏକଣ ମୁଁ ସ୍ୱପ୍ନ ଦେଖୁଛି ? କି ଅପୂର୍ବ ରୂପ ମାଧୁରୀ ! କଣ୍ଠରେ ଯେପରି ବୀଣାର ଝଙ୍କାର ଉଠୁଛି କଥାକଥାକେ ଯେପରି ସଙ୍ଗୀତଲହରୀ ଖେଳିଯାଉଛି ସେ ଦୃଷ୍ଟିରେ ଯେପରି ଚୁମ୍ବକର ଶକ୍ତି ରହିଛି । କି ଉଦାର ଭାବ ! ଯେତିକ ଭଲ କରି ଦେଖୁଛି । ମୋର ମନ କାହିଁକି ତେତିକି ଏ ଦେବୀ ପ୍ରତିମା ପ୍ରତି ଆକୃଷ୍ଟ ହେଉଛି । ଏମାନେ କିଏ ? ଏପରି ସୌମ୍ୟ ମୂର୍ତ୍ତି ମର୍ତ୍ତ୍ୟ ଲୋକରେ କି ସମ୍ଭବେ ? କିନ୍ତୁ ଏମାନଙ୍କର ହାବ ଭାବରୁ ଏମାନେ ମାନବୀ ବୋଲି ମୋର ଧାରଣା ହେଉଛି । ଆକାର ଇଙ୍ଗିତ ଓ ବେଶ ଭୂଷାରୁ ମଧ୍ୟ ବୁଝାଯାଉଛି ଯେ ଏ ଜଣସ୍ତ୍ରୀ ଜଣେ ରାଜକୁମାରୀ ହେବେ । ( ପ୍ରକାଶ୍ୟ ) ଆସ୍ତୁ ସୁନ୍ଦରୀମାନେ ଏ ଅଧମର ଧୃଷ୍ଟତା ମାଫ କରନ୍ତୁ । ଥରେ ଅନୁଗ୍ରହ କରି ଆପଣମାନେ କିଏ ଏଠାକୁ ଆସିବାର ଆପଣ ମାନଙ୍କର ଉଦ୍ଦେଶ୍ୟ କଣ କହିବେ କି ?

କମଳା -- ଯୁବକ ! ଆମ୍ଭେ ମାନେ ସହାପୁର ନିବସୀ ଦୁଇଟି ବାଳିକା ଏଠାରେ ଯୁଦ୍ଧ ହେବାର ଶୁଣି, ଆମ୍ଭେମାନେ ଆମ୍ଭମାନଙ୍କର କର୍ତ୍ତବ୍ୟ କରିବାକୁ ଆସିଥିଲୁ । ଆପଣଙ୍କର ପରିଚୟ ପାଇ ପାରିବୁ କି ?

ଅମର—ଏ ଯେ ଯୁଦ୍ଧକ୍ଷେତ୍ର । ଏଠାରେ ପୁଣି ସ୍ତ୍ରୀମାନଙ୍କର କର୍ତ୍ତବ୍ୟ କଣ ?

ରୋହିଣୀ— ମନୁଷ୍ୟ ବଡ଼ ସ୍ୱାର୍ଥପର । ସେଥିପାଇଁ ସେ ସ୍ତ୍ରୀମାନଙ୍କୁ ସର୍ବଦା ଅବଳା ରଖିବାକୁ ଚାହେଁ । ପୁରୁଷର ହୃଦୟ ପାଷାଣରୁ କଠିନ, କିନ୍ତୁ ନାରୀର ହୃଦୟ ଲବଣିଠାରୁ କୋମଳ । ଯୁଦ୍ଧ

କ୍ଷେତ୍ରରେ ରାଜପୁତ ବୀର ରଣବାଦ୍ୟ ଶୁଣି ଯଦି ଅସ୍ପୃହୋଇ ରହିନପାରେ; ମୁମୂର୍ଷୁର ଆର୍ତ୍ତନାଦ ଶୁଣି ରାଜପୁତ କନ୍ୟା କିପରି ଅସ୍ପୃହୋଇ ଘରେ ରହିବ ? ସବୁଠାରେ ଓ ସବୁକାଳେ ସ୍ତ୍ରୀ ପୁରୁଷ ଉଭୟଙ୍କର କର୍ତ୍ତବ୍ୟ ରହିଛି । କିନ୍ତୁ ସ୍ୱାର୍ଥାନ୍ଧ ପୁରୁଷ ନିଜକୁ ବଡ କରିବାପାଇଁ ଅନ୍ୟକୁ ତାର କର୍ତ୍ତବ୍ୟ କରିବାକୁ ଦିଏନାହିଁ ।

ଅମର — ଏ ଯୁକ୍ତିରେ ମୁଁ ପରାଜୟ ସ୍ୱୀକାର କରୁଅଛି । ମୋର ପଚାରିବାର ଦୋଷ କ୍ଷମା କରିବେ ॥

କମଳା — କେବଳ ସ୍ୱୀକାର କଲେ ହେବନାହିଁ । ତେବେ ପରାଜିତ କିଏ ଆଉ ଆପଣଙ୍କର ପରିଚୟ କଣ ?

ଅମର — ବଲାସପୁର ରାଜାଙ୍କର ଜ୍ୟେଷ୍ଠପୁତ୍ର ଅମର ପରାଜିତ; କିନ୍ତୁ ମୋର ବିଜେତାଙ୍କୁ ମୁଁ ଜାଣିଲି ନାହିଁ ଯେ ।

କମଳା — ବିଜେତା ସାହାପୁର ରାଣୀଙ୍କର

( ରୋହିଣୀ କମଳାକୁ ବାଧାଦେଇ କାନରେ କହିଦେବା )

ରୋହିଣୀ — ଆ କମଳା ! ଅଟେମ ଆମ କାମରେ ଯିବା

(ପ୍ରସ୍ଥାନ)

ଅମର — ବୁଝିଛି ଏ ସାହାପୁର ରାଣୀଙ୍କର କନ୍ୟା । ତେବେ ଯୁଦ୍ଧର ଫଳ ମଧ୍ୟ ଏହିପରି । ବଲାସପୁର ଯୁବରାଜ ଯଦି ସାହାପୁର କେମାଙ୍କଠାରେ ପରାସ୍ତ, ତେବେତ ବଲାସପୁର ରାଜା ସାହାପୁର ରାଣୀଙ୍କଠାରେ ପରାସ୍ତ, ଏଥିବା ସନ୍ଦେହ କଣ ?

(ପ୍ରସ୍ଥାନ)

ଅଷ୍ଟମଦୃଶ୍ୟ — ଯୁଦ୍ଧକ୍ଷେତ୍ରର ଅପରପାର୍ଶ୍ୱ ।

(ମନ୍ତ୍ରୀଙ୍କର ପ୍ରବେଶ)

ମନ୍ତ୍ରୀ — ହାହାନ୍ତ ! ମହାରାଜ କେଉଁଆଡେ ଗଲେ ? ତାଙ୍କୁ ତ କେତେ ଅନୁସନ୍ଧାନ କଲିଣି, କେଉଁଠାରେ ବ ପାଇଲି ନାହିଁ ତେବେ କଣ ଶତ୍ରୁଦ୍ୱାର ବନ୍ଦୀହେଲେ ? ନା ନା, ତାଙ୍କ ସଙ୍ଗେତ ପ୍ରାୟ ପାଞ୍ଚସହସ୍ର ସୈନ୍ୟ ଅଛନ୍ତି । ତେବେ ଗଲେ କେଉଁଆଡେ ?

( ଜଣେ ସୈନିକର ବ୍ୟସ୍ତଭାବେ ପ୍ରବେଶ )

ସୈନିକ — ମନ୍ତ୍ରୀ ମହାଶୟ । ସର୍ବନାଶ ଉପସ୍ଥିତ । ମହାରାଜା ଶତ୍ରୁ-ସୈନ୍ୟ କର୍ତ୍ତୃକ ବନ୍ଦୀ ।

ମନ୍ତ୍ରୀ — ସେନାପତି ।

ସୈନିକ — ସେନାପତି ଯୁଦ୍ଧ କରୁଅଛନ୍ତି ।

ମନ୍ତ୍ରୀ — ଶତ୍ରୁପକ୍ଷ ସୈନ୍ୟ କେତେ ? ଯୁଦ୍ଧ କପରି ଚାଲିଛି ?

ସୈନିକ — ମନ୍ତ୍ରୀ ମହାଶୟ । ଓଃ କି ଭୀଷଣ ଯୁଦ୍ଧ ? ଆମ୍ଭମାନଙ୍କର ଅଧିକାଂଶ ସୈନ୍ୟ ନିହତ । ଶତ୍ରୁପକ୍ଷରୁ ଅଳ୍ପସଂଖ୍ୟକ ସୈନ୍ୟ-ହତ ହୋଇଛନ୍ତି ।

ମନ୍ତ୍ରୀ — ଆଉ କମଳା ସୁନ୍ଦରୀ କେଉଁଠାରେ ?

ସୈନିକ — ତାଙ୍କକଥା ଛାଡ଼ନ୍ତୁ ମହାଶୟ ! ସେ ମାନବୀ ନୁହନ୍ତି, ସେ ଦେବୀ । ଓଃ କି ଅପୂର୍ବ ରଣ ପାଣ୍ଡିତ୍ୟ ; କି ଅଦ୍ଭୁତ ଅସ୍ତ୍ର ଚାଳନା । ଏପରି ଅସ୍ତ୍ର ଚାଳନା ଆମ୍ଭେମାନେ କେବେ ଦେଖି ନଥିଲୁ କି ଶୁଣି ନଥିଲୁ । ସତେ କି ରଣଚଣ୍ଡି ଅସି, ଶତ୍ରୁ-ସୈନ୍ୟର ସେନାନାୟକ ରୂପେ ବିରାଜମାନ । ଯେତେବେଳେ ସେ ତରବାରି ଘେନି ଯୁଦ୍ଧ କରୁଥିଲେ । ଓଃ କି ସେ ଦୃଶ୍ୟ ।

ଯେପରି କି ବିଦ୍ୟୁତର ଆଲୁଅଖେଳ ଯାଉଥିଲା । ତେତେ-ବେଳେ ଅମ୍ଭମାନଙ୍କ ହାତରୁ ତରବାରୀ ଖସିପଡ଼ିଲା । ସମସ୍ତେ ନୀରବ, ନିଶ୍ଚଳ, ନିସ୍ପନ୍ଦ ଭାବରେ ଆଖିଆଗରେ ରାଣୀଙ୍କର ସେହି ଅସାଧାରଣ ଅସ୍ତ୍ରଚାଳନା ଦେଖୁଥିଲେ ।

ମନ୍ତ୍ରୀ—ଆରେ ବନ୍ଧୁକ କଣ ନଥିଲା ? ଗୋଟିଏ ଗୁଳି ଛୁଟିପାରିଲା ନାହିଁ ।

ସୈନିକ—ବନ୍ଧୁକ ଛୁଟିଲାରୁ ଘୋଡା ପଡ଼ିଲା ନାହିଁ କେବଳ।

ମନ୍ତ୍ରୀ—ମହାରାଜ କଣ କରୁଥିଲେ ।

ସୈନିକ—ତାଙ୍କ ସମ୍ମୁଖରେ ଏପରି ତରବାରୀ ଖେଳଥିଲା ଯେ ତାଙ୍କ ପଲକ ପକାଇବାକୁ ସମୟ ମିଳିଲା ନାହିଁ ।

ମନ୍ତ୍ରୀ—ତହୁଁ ମହାରାଜ କଣକଲେ ।

ସୈନିକ—ତାଙ୍କର ସୈନ୍ୟମାନେ ଆସି ମହାରାଜାଙ୍କୁ ବନ୍ଦୀକରି ନେଇ-ଗଲେ ।

ମନ୍ତ୍ରୀ—ଆଉ ସେନାପତି କଣ ମୂକହୋଇ ଏହି ଦୃଶ୍ୟ ଦେଖୁଥିଲେ ।

ସୈନିକ—ସେନାପତି ସେ ଦୃଶ୍ୟଦେଖି କାଠ ପୁତ୍ତଳିକାପରି ନୀରବ ନିଶ୍ଚଳଭାବେ ଠିଆହୋଇଥିଲେ । ଯେପରି କି ମନ୍ତ୍ରମୁଗ୍ଧଫଣୀ । ବେଖି ଫୁଂକିଲା ବେଳକୁ ସ୍ୱରବାହାରିଲା ନାହିଁ । ସେ ଏପ-ର୍ଯ୍ୟନ୍ତ କଥା କହି ନାହାନ୍ତି । ସମସ୍ତେ ଯେପରି କି ଏକ ଅଦ୍ଭୁତ ଐନ୍ଦ୍ରଜାଲିକ ଶକ୍ତିର ବଶୀଭୂତ ହୋଇଗଲେ ।

ମନ୍ତ୍ରୀ—ଉଃ ! ସେ ସମୟରେ ଯା ମୁଁ ରହିନପାରିଲି ।

ସୈନିକ—ଆପଣ ସେତେବେଳେ କେଉଁଠାରେ ଥିଲେ କି ?

ମନ୍ତ୍ରୀ—ଆରେ ଆପେ ବଞ୍ଚିଲେ ବାପର ନା ରହିବ ଭାବି ଆଗରୁ ପଳାଇ ଆସିଲି । ଆଚ୍ଛା, ଆଉ ରାଜକୁମାରଙ୍କର ଖବର କଣ ।

ସୈନିକ—ଏକା ରାଜକୁମାର ଅମରସିଂହ ଅଦ୍ଭୁତ ରଣକୌଶଳ ଦେଖାଇଥିଲେ । କିନ୍ତୁ ଶତ୍ରୁସୈନ୍ୟ ଦ୍ୱାରା ଅକ୍ରାନ୍ତ ହୋଇ ମୃତପ୍ରାୟ ପଡ଼ିଥିଲେ । ସେହି ସମୟରେ ଛଅ ଦୁଇଟି ଅଳ୍ପ ବୟସ୍କା ବାଳିକା ଆସି ; ସିଞ୍ଚା, ଶୁଶ୍ରୂଷା କରିବାରୁ ତାଙ୍କର ମୂର୍ଚ୍ଛା ଭାଙ୍ଗିଗଲା । ତହୁଁ ସେମାନେ କୁଆଡେ ଚାଲିଗଲେ । ରାଜକୁମାର ବର୍ତ୍ତମାନ ଶିବିରରେ । ହଁ, ମନ୍ତ୍ରୀ ମହାଶୟ, ସେକଥା ଛାଡ଼ନ୍ତୁ, ବର୍ତ୍ତମାନ ମହାରାଜ ବନ୍ଧା, ଉପାୟ କଣ ? ଶୀଘ୍ର କହନ୍ତୁ, ମନ୍ତ୍ରୀ ମହାଶୟ ?

ମନ୍ତ୍ରୀ—ହଁ ଠିକ କଥା ସୈନିକ ! ଉପାୟ କଣକରିବା କହିଲୁ ଭଲା?

ସୈନିକ—ମନ୍ତ୍ରୀ ଆପଣ କହିବେ ନା ମୁଁ କଣ କହିବ ।

ମନ୍ତ୍ରୀ—ଅରେ ! ବର୍ତ୍ତମାନ ମୋର କିଛି ବୁଦ୍ଧି ମନେ ପଡ଼ୁନାହିଁ । ମୋର ମୁଣ୍ଡ ଘୂରେଇ ହୋଇଯାଉଛି । ତୁମ୍ଭେମାନେ ଯାଅ କିଛି ଗୋଟାଏ ଉପାୟ ଠିକ କର । ସେନାପତିଙ୍କୁ ପଚାରି ଆଉଥରେ ଯୁଦ୍ଧକରି ରାଜାଙ୍କୁ ଛଡ଼ାଇଆସ ।

ସୈନିକ—ସେନାପତି ଯେ ମୂର୍ଚ୍ଛାହୋଇ ଯାଇଛନ୍ତି ଆପଣ ତାଙ୍କ ପରିବର୍ତ୍ତେ ଯୁଦ୍ଧକୁ ଚାଲନ୍ତୁ ।

ମନ୍ତ୍ରୀ—(ସ୍ୱଗତ) ଏ ମଲି ତ ରେ । ଯାହାକୁ ଡରୁଥିଲି, ସେଇଥିରେ ଆସି ପଡ଼ିଲି । (ପ୍ରକାଶ୍ୟେ) କହୁଛୁ ଯେତେବେଳେ ମୋର ଯିବାକୁ କିଛି ମନାନାହିଁ । ତେବେ ସେ ସ୍ତ୍ରୀଲୋକ, ସ୍ତ୍ରୀ ଲୋକସଙ୍ଗେ ଯୁଦ୍ଧକରିବା ମୋପକ୍ଷରେ ଶୋଭନୀୟ ନୁହେଁ ।

ସୈନିକ—ଆପଣଙ୍କୁ ଯୁଦ୍ଧ କରିବାକୁ ହେବନାହିଁ । ଆମ୍ଭେମାନେ ଯୁଦ୍ଧକରିବୁ, ଆପଣ ଖାଲି ସେନାପତିରୂପେ ଆଦେଶଦେବେ ।

ମନ୍ତ୍ରୀ—ହଁ, ତାହାହେଲେ ଯାଇ ଅଦେଶ ଦେଇପାରେ । ତେବେ ସେଇ ତୋପଟାକୁ ଫୁଙ୍କିଲେ ମୋର ପେଟ ଫାଟେ

ସୈନିକ—ନା, ଆପଣଙ୍କୁ କଷ୍ଟକରିବାକୁ ହେବନାହିଁ । ଖାଲି ସୈନ୍ୟ-ମାନଙ୍କ ସଙ୍ଗେଥିବେ ।

ମନ୍ତ୍ରୀ—(ସ୍ୱଗତ) ଏ ଛାଡ଼ିବନାହିଁ (ପ୍ରକାଶ୍ୟେ) ଅଚ୍ଛାହେଉ ! ତୁମ୍ଭେ-ମାନେ ଶୀଘ୍ର ଚାଲ ମୁଁ ଟିକଏ ପଛରେ ଯାଉଛି ।

— ✲ — (ପ୍ରସ୍ଥାନ)

ନବମଦୃଶ୍ୟ — ବିଚାରାଳୟ

ସିଂହାସନରେ ରାଣୀ କମଳାସୁନ୍ଦରୀ, ଏକପାର୍ଶ୍ୱେ ମନ୍ତ୍ରୀ ଓ ରାଘବଜୀ, ଅନ୍ୟପାର୍ଶ୍ୱେ ଦୃଢ ଶୃଙ୍ଖଳାବଦ୍ଧ ପ୍ରହରୀମାନଙ୍କ ଦ୍ୱାରା ବେଷ୍ଟିତ ବିଜୟସିଂହ ଦଣ୍ଡାୟମାନ ।

କମଳା—କି ମହାରାଜ, ଉପାୟ କଣ ?

ବିଜୟ—କି ଉପାୟ ।

କମଳା — ଆପଣ ବର୍ତ୍ତମାନ ମୋର ବନ୍ଦୀ । ମୁଁ ବର୍ତ୍ତମାନ କଣକରି ପାରେ ଜାଣନ୍ତି ତ ?

ବିଜୟ — କଣ କରିପାରିବେ ?

କମଳା — କଣ କରିପାରିବି ? ଦେଖିଲେ ତ ମହାରାଜ ! କ୍ଷତ୍ରିୟ ବୀରାଙ୍ଗନା କିପରି ତାର ପ୍ରତିଜ୍ଞା ରକ୍ଷା କରିପାରନ୍ତି । ଆପଣ ବର୍ତ୍ତମାନ ମୋର ଅଧୀନ । ମୁଁ ଆପଣଙ୍କୁ ମୋର ପଦସେବାରେ ନିଯୁକ୍ତ କରିପାରେ ।

ବିଜୟ ମହାରାଣୀ ! ବିଳାସପୁରର ରାଜା ଆଜି ଆପଣଂକ ହସ୍ତରେ ବନ୍ଦୀ ହୋଇଛି ବୋଲି ଯେ ଆପଣଙ୍କ ପଦସେବାରେ ନିଯୁକ୍ତ ରହିବ ଏହା ଭାବିବା ଆପଣଙ୍କର ଭ୍ରମ ।

ରାଘବଜୀ ଭ୍ରମ ନୁହେ ମହାରାଜ ! ଆପଣ ବର୍ତ୍ତମାନ ନିଜର ସ୍ୱାଧୀ-ନତା ହରାଇଛନ୍ତି । ମହାରାଣୀ ବର୍ତ୍ତମାନ ଭାବିଲେ ଯାହାଇଚ୍ଛା

ତାହା କରିପାରନ୍ତି । ମହାରାଣୀଙ୍କପରି ସାଧ୍ୱୀସତୀ ନାରୀବାଳାର ପଦସେବା କରିବା ତ ସୌଭାଗ୍ୟର କଥା, ଇଚ୍ଛାକଲେ ସେ ବର୍ତ୍ତମାନ ଆପଣଙ୍କୁ ତାଙ୍କର ଭୃତ୍ୟର ପଦସେବାରେ ନିଯୁକ୍ତ କରାଇପାରନ୍ତି । କିନ୍ତୁ ମହାରାଜ ! ସାହାପୁରର ମହାରାଣୀ ଆପଣଙ୍କପରି ନୀଚ ହୃଦୟା ଓ କପଟାଚାରିଣୀ ନୁହନ୍ତି । ପରାଜିତ ଶତ୍ରୁପ୍ରତି ଦୟା ଓ କ୍ଷମା ଆଚରଣ କରିବା ତାଙ୍କର ନୀତି ।

ବିଜୟ—ରଘୁବଂଶୀ ! ସେଦିନର ଘଟଣା କଣ ବିସ୍ମୃତ ହୋଇଅଛ ? କାରାଗାର ଭଗ୍ନକରି ତସ୍କରପରି ଗୋପନରେ ପଳାଇ ଆସିଛ ବୋଲି କଣ ଏତେ ବାହାଦୁରୀକରି କଥା କହୁଛ ? ସାବଧାନ ରଘୁବଂଶ !

ରଘୁବଂଶ—ମହାରାଜ ! ରଘୁବଂଶୀ ଚିରକାଳରୁ ସାବଧାନହୋଇ କାର୍ଯ୍ୟ କରି ଆସୁଅଛି । ମାତ୍ର ଥରେ ଆପଣଙ୍କପରି ବିଶ୍ୱାସକର ନିର୍ଦ୍ଦୋଷରେ ବନ୍ଦୀ ହୋଇଥିଲି; ସେ ବିଶ୍ୱାସଘାତକର ପ୍ରତି-ଫଳସ୍ୱରୂପ ଆଜି ଆପଣ ଈଶ୍ୱରଙ୍କ କର୍ତ୍ତୃକ ବନ୍ଦୀହୋଇ ଅଛନ୍ତି ।

କମଳା—କ୍ଷାନ୍ତହୁଅ ସେନାପତି (ରାଜାଙ୍କପ୍ରତି). ମହାରାଜ ! କିଦଣ୍ଡ ଆପଣଙ୍କର ଉପଯୁକ୍ତ ହେବ ?

ବିଜୟ—ମୁଁ ଯେତେବେଳେ ଆପଣଙ୍କ ହାତରେ ବନ୍ଦୀ, ଯେଉଁଦଣ୍ଡ ଦେବେ ତାହା ଗ୍ରହଣକରିବାକୁ ମୁଁ ପ୍ରସ୍ତୁତଅଛି ।

କମଳା  ମହାରାଜ! ଆପଣ ନିଜେ କହନ୍ତୁ ଦେଖି ଜଣେ ବିଶ୍ୱାସ-ଘାତକ ସ୍ୱାମୀହନ୍ତାକୁ ପତିବ୍ରତା କ୍ଷତ୍ରିୟଲଲନା କି ଉପଯୁକ୍ତ ଶାସ୍ତି ଦେଇପାରେ ? କି ପ୍ରତିଶୋଧ ନେଇପାରେ ? ଆପଣ

କପଟାଚରଣକରି ମୋର ସ୍ୱର୍ଗୀୟସ୍ୱାମୀଙ୍କୁ ନିର୍ଦ୍ଦୋଷରେ ବନ୍ଦୀକରି ଅଶେଷ ଯାତନା ଦେଇଅଛନ୍ତି । ପୁଣି କଳ୍ପନା କରିଥିଲେ ଯେ ମତେ ଧରିନେଇ ଖଣ୍ଡ ଖଣ୍ଡ କରି କାଟି ଜ୍ୱଳନ୍ତ ଅନଳ କୁଣ୍ଡରେ ପକାଇବେ । ଏସମସ୍ତ ଅପରାଧର ଯେ କି ଦଣ୍ଡ ଉପଯୁକ୍ତ ହେବ ସ୍ଥିରକରିପାରି ପାରୁନାହିଁ । କହନ୍ତୁ ସେନାପତି ମହାଶୟ ।

ରାଘବଜୀ—ମହାରାଣୀ ! ଆଜୀବନ ନିର୍ଜ୍ଜନ କାରାବାସ ହିଁ ଉପଯୁକ୍ତ ଶାସ୍ତି ।

କମଳା—ମହାରାଜ ! ଏଦଣ୍ଡ ସହ୍ୟକରିପାରିବେତ ?

ବିଜୟ—ମହାରାଣୀ ! ଏହାଠାରୁ ମୃତ୍ୟୁସହସ୍ରେଗୁଣେ ଶ୍ରେୟସ୍କର । ଏଦଣ୍ଡ ନଦେଇ ପ୍ରାଣଦଣ୍ଡ ଦେବାକୁ ଆଜ୍ଞାକରନ୍ତୁ ।

କମଳା—ନା, ମହାରାଜ ! ଏହା ଘଇସ୍ୱର ଧର୍ମ ନୁହେଁ । ଯାହାପୁରର ମହାରାଣୀ କମଳା ସୁନ୍ଦରୀ, ବୀରବାଳା, ବୀରପତ୍ନୀ । ନିଃସହାୟ ଶତ୍ରୁ ପ୍ରତି କ୍ଷମା ବିଧାନ କରିବା ହିଁ ମହାନୁଭବ କ୍ଷତ୍ରିୟଜାତିର ଚିରନ୍ତନ ନୀତି, ଆଉ ଏହି ପ୍ରଧାନ କର୍ତ୍ତବ୍ୟ । (ସିଂହାସନରୁ ଉଠିଆସି) ଏହି ନିଅନ୍ତୁ ମହାରାଜ ! ଆପଣ ବିଶ୍ୱାସଘାତକତା କରି, କପଟାଚରଣ କରି ମୋର ଯେ ଅନିଷ୍ଟ ସାଧନ କରି ଅଛନ୍ତି, ଏହି ତାର ଉପଯୁକ୍ତ ଶାସ୍ତି । ଏହି ତାର ଉପଯୁକ୍ତ ପ୍ରତିଶୋଧ ।

( ବନ୍ଧନ ମୋଚନ )

— * —

ଡ୍ରପ୍ ।

# ଦ୍ୱିତୀୟ ଅଂକ ।

## ପ୍ରଥମଦୃଶ୍ୟ—ରାଜସଭା

( ସିଂହାସନରେ ରାଜା ବିଜୟସିଂହ ତତ୍ପାର୍ଶ୍ୱେ ମନ୍ତ୍ରୀ )

ବିଜୟ—ମନ୍ତ୍ରୀ ମହାଶୟ ! ବର୍ତ୍ତମାନ ଯୁଦ୍ଧ ଶେଷ ହୋଇଛି ! ରାଜ୍ୟରେ ଶାନ୍ତି ବିରାଜମାନ କରୁଛି । କାଲି ସାହାପୁରର ମହାରାଣୀଙ୍କ ନିକଟରୁ ଜଣେ ଦୂତ ଆସିଛି । ସାହାପୁର ରାଜଯେମାଙ୍କ ସଙ୍ଗେ ଅମରର ବିବାହ ପାଇଁ ଯେଉଁ ସତ୍ୟ କରାହୋଇଛି, ସେହି ସମ୍ପର୍କରେ ଦୂତ ଆସିଅଛି । ସେ ବିଷୟରେ କି ବ୍ୟବସ୍ଥା କରିବାକୁ ହେବ ମନ୍ତ୍ରୀମହାଶୟ !

ମନ୍ତ୍ରୀ—ମହାରାଜ ! ଯେତେବେଳେ ସତ୍ୟ କରିଛନ୍ତି ସେଥିରେ ଆଉ କିଛି କଥାନାହିଁ, ତେବେ କିଛିଦିନ ପରେ ବିବାହ ହେଲେ ଭଲ ହୁଅନ୍ତା । କାରଣ ଅଳ୍ପଦିନ ତଳେ ଯୁଦ୍ଧରେ ଅନେକ ଅର୍ଥ ବ୍ୟୟ ହୋଇଯାଇଅଛି, ରାଜ୍ୟର ଅନେକ କ୍ଷତି ହୋଇଯାଇଛି । ବର୍ତ୍ତମାନ ରାଜକୋଷ ଅର୍ଥଶୂନ୍ୟ ! କିଛିଦିନପରେ ବିବାହ ହେଲେ ଭଲ ହୁଅନ୍ତା ।

ବିଜୟ—ହୁଁ-ଯେତେବେଳେ ସାହାପୁରର ରାଜଯେମାଙ୍କ ସଙ୍ଗେ ଅମ୍ଭ ଯୁବରାଜଙ୍କର ବିବାହ ହେବାର ସତ୍ୟ ହୋଇଛି, ତାହା ଆଉ ଅନ୍ୟଥା ହୋଇନପାରେ ! ଏତେବେ ଆଜ ହୁଅନ୍ତା ନୁହେଁତ ଦୁଇ ଚାରି ମାସପରେ ହେବ, ଏଥିରେ ବିଶେଷ କ୍ଷତି ନାହିଁ ।

ମନ୍ତ୍ରୀ—ଏଥିରେ ମହାରାଣୀଙ୍କର ମତକଣ ? ତାଙ୍କୁ ସମ୍ବାଦ ଦିଆହୋଇଛିତ ?

ବିଜୟ—ନା, ତାଙ୍କୁ ସମ୍ବାଦଦିଆ ହୋଇନାହିଁ ! ପରେ ସମ୍ବାଦଦେବି ! ତାଙ୍କର ମତାମତର କୌଣସି ଆବଶ୍ୟକତ ନାହିଁ । ଯାହା ଭଲ ହେବ ତାହା କରିବା ବିଧେୟ ।

ମନ୍ତ୍ରୀ—ତେବେ ଦୂତକୁ ସଭାକୁ ଡକାଇ ସମସ୍ତ ବୁଝାଇ କହିଲେ ଭଲ ହୁଅନ୍ତା ।

ବିଜୟ—ହଁ, କିଏ ଅଛରେ ?

( ଦ୍ୱାରୀର ପ୍ରବେଶ )

ଦ୍ୱାରୀ—ଆଜ୍ଞା ମହିମା !        (ପ୍ରଣାମ)

ବିଜୟ—ଯାଇ, ସାହାପୁର ଦୂତଙ୍କୁ ସମାଦରରେ ଏଠାକୁ ନେଇଆସ ।

ଦ୍ୱାରୀ—ଯେ ଆଜ୍ଞା ।        (ପ୍ରସ୍ଥାନ)

ବିଜୟ—ମନ୍ତ୍ରୀ ମହାଶୟ । ଦୂତର ସମସ୍ତ ବନ୍ଦୋବସ୍ତ ହୋଇ ଅଛିତ ?

ମନ୍ତ୍ରୀ—ହଁ, ମହାରାଜ

(ଦ୍ୱାରୀସହ ଦୂତର ପ୍ରବେଶ)

ଦୂତ—ପ୍ରଣାମ ମହାରାଜ ।

(ପ୍ରଣାମ କରିବା)

ବିଜୟ—ଆପଣଙ୍କର କୌଣସି ଅସୁବିଧା ହେଉନାହିଁ ?

ଦୂତ—ନା, ମହାରାଜ । ମୁଁ ବେଶ୍ ସୁବିଧାରେ ଅଛି ।

ବିଜୟ—ମହାରାଣୀଙ୍କର ସମସ୍ତ କୁଶଳତ ?

ଦୂତ—ଭଗବାନଙ୍କ କୃପାରୁ 'ମହାରାଣୀଙ୍କର ସମସ୍ତ କୁଶଳ । ତାଙ୍କର ଯେମାଙ୍କୁ ଆପଣଙ୍କର ରାଜକୁମାରଙ୍କ ସଙ୍ଗେ ବିବାହ ହେଲେ ସେ ନିଶ୍ଚିନ୍ତ ହେବେ ।

ବିଜୟ—ଆଚ୍ଛା । ତୁମ୍ଭର ମହାରାଣୀଙ୍କୁ ମୋହର ପ୍ରଣାମ ଜଣାଇ କହିବ ଯେତେବେଳେ ଯେମାଙ୍କ ସହିତ ଯୁବରାଜଙ୍କର ବିବାହ ହେବାର ସତ୍ୟ ହୋଇଛି, ସେତେବେଳେ ତାହା ନିଶ୍ଚୟ ହେବ । ତେବେ କେତେକ ଅସୁବିଧା ହେତୁ ଦୁଇ

ଗୁଡ଼ିଏ ମାସପରେ କରିବା ମୋର ମତ । ମହାରାଣୀଙ୍କୁ ଏସମ୍ବାଦ ଜଣାଇଦେବ ।

ଦୂତ — ଆଜ୍ଞା ମହିମା । ଠିକ୍ ଏହିପରି ଜଣାଇବ ।

ବିଜୟ — ମନ୍ତ୍ରୀ ମହାଶୟ । ଦୂତଙ୍କୁ ସମାଦର ସହିତ ବିଦାୟକରି ଦିଅନ୍ତୁ । ଆଉ ବିଳମ୍ବ କରନ୍ତୁ ନାହିଁ ।

( ଏକଦିଗେ ମନ୍ତ୍ରୀସହ ଦୂତ ଓ ଦ୍ୱାରୀର ପ୍ରସ୍ଥାନ)

(ଅନ୍ୟଦିଗେ ବିଜୟସିଂହ ପ୍ରସ୍ଥାନ)

ଦ୍ୱିତୀୟଦୃଶ୍ୟ-ପଥ

(ଅଗାଧୁମିଶ୍ରଙ୍କର ଦ୍ରୁତବେଗେ ପ୍ରବେଶ)

(ପଛରୁ ଅନାମ ପ୍ରବେଶ)

ଅନାମ — ହଇହୋ, ମିଶ୍ରେ ଆପଣେ ! ଏମିତ ଲଣ୍ଡଭଣ୍ଡ ହୋଇ କୁଆଡେ ଯାଉଁଛନ୍ତି, ଟିକଏ ଶୁଣନ୍ତୁ ।

ଅଗାଧୁ — ଆଉ ଶୁଣିବି ଛତା ଗଣ୍ଡି ମୁଣ୍ଡ । ଅରେ ତୁ କିଏରେ ? ତୁ ମଣିଷ ନା ଧୁମ୍ବୁର ? ପଛଟାରୁ ଡ଼ାକ ପକାଉଛୁ ?

ଅନାମ — ଧୁମ୍ବୁର କଣ ପଛରୁ ଡ଼କା ପକାଏ ? କହେ ପଛରୁ ଡାକିଲବୋଲି ହେଲାକଣ ?

ଅଗାଧୁ — ଅରେ ହେବ କଣ ! ମୁଁ ଗୋଟାଏ ଅନୁକୂଳ କରି ବାହାରିଥିଲି ତୁ ପଛଟାରୁ ଡାକି ଅନୁକୂଳଟା ବିଗାଡ ଦେଲୁ ।

ଅନାମ — କୁଆଡେ ଏପରି ଅନୁକୂଳରେ ବାହାରି ଥିଲକି ?

ଅଗାଧୁ — ଅରେ ତତେ କହିଲେ କଣ କିଛି ମିଳିବ ? କିଛିଦେବୁ ? ଝୁଲ୍ ଶୁଣିଲୁ ବାଲଟାଏ ।

ଅନାମ — ମିଳନ୍ତୁନମିଳନ୍ତୁ କହିଲେ କଣ କିଛି ଦୋଷ ଲାଗିବ ?

ଅଗାଧୁ—ଆରେ-ଏଇଟା କିଏରେ ବେହୁପୁଅ ? ମାହାଳିଆଟାରେ ମୋସଙ୍ଗେ ଦାକ୍‌ସିକ୍ ଲଗେଇଛୁ ।

ଅନାମ—ମିଶ୍ରେ ଆପଣେ ! ମତେ ଚିହ୍ନିପାରୁ ନାହଁ । ମୁଁ ପଗ ଘଢା ଘର ଚାକର ଅନାମ ।

ଅଗାଧୁ—ଏଁ ( ଆଶ୍ଚର୍ଯ୍ୟ ) ଏ କିଏ ବାପ ଅନାମ ! ମୁଁ ଚିହ୍ନିପାରି ନଥିଲି ବାପ ! ବୁଢା ହେଲିଣି । ଚାଳିଶା ଧରିଲାଣି, କଣ କହୁଛୁ ବାପ !

ଅନାମ—କଥା ପଚାରିଲା ବେଳକ ତ ଉଗ୍ରଶର୍ମା, ଆଉ କହିବ କଣ ?

ଅଗାଧୁ—ଆରେ ବାପ ଅନାମ, ବୁଝିଲୁ କନା, ଆଛୁ ଶୁଣିଲିଯେ ଯୁବ-ରାଜଙ୍କର ବିଭାଘର ହେବ । ସେଥିପାଇଁ ରାଜାଘରେ ପୁଷ୍ଟାଏ ଦହିଚୁଡ଼ା ଖାଇବି ବୋଲି ଭାରି ସରାଗରେ ଆସୁଥିଲି, ତୁ ପଛରୁ ଡାକିବାରୁ ମତେ ଟିକିଏ ବିରକ୍ତ ଲାଗିଲା । କିନ୍ତୁ ମନେ କରିବୁନାହିଁ, ଅନାମ । ଆଚ୍ଛା ବିବାହ ଶେଷ ହେଲାଣି ? ବ୍ରାହ୍ମଣ ଭୋଜନ ଆଉ କେତେ ଡେରି ?

ଅନାମ—କଅଁ ମିଶ୍ରେ ! ବିଭାଘର ପର ଛ ମାସ ପାଇଁ ବନ୍ଦହେଲା ।

ଅଗାଧୁ—(ମୁଣ୍ଡରେ ହାତଦେଇ ଚମକି) ଏଁ କଣ କହୁଛୁରେ ? ସତ କହୁଛୁ ନା ମିଛ କହୁଛୁ ? ମୋରାଣ ପଡ଼ାଇ କହିବୁ । ସତେ ବିଭାଘର ବନ୍ଦହେଲା ?

ଅନାମ—ତମରାଣ ମିଶ୍ରେ, ମିଛ କାହିଁକି କହିବି ?

ଅଗାଧୁ—(ଥକାମାର ହୋଇ ବସିବା )

ଅନାମ—କଅଁ ମିଶ୍ରେ ଏମିତି ବସିପଡ଼ିଲ କାହିଁକି ?

ଅଗାଧୁ—କଣ କହୁଛୁରେ ବାପ ! ମୁଠେ ପେଟପୂରାଇ ଖାଇବି ବୋଲି ଦୁଇଦିନ ହେଲା ନଖାଇ ନପିଇ ୨୦ କୋଶ ବାଟ ବଉଡ଼ି

ଅମ୍ଭିଥିଲ ସବୁ ପରିଶ୍ରମ ପଣ୍ଡହେଲା ? ଏବେ କଅଣ କରିବ କିଛି ବୁଦ୍ଧି ଦିଶୁ ନାହିଁ ।

ଅନାମ—ଅସ୍ତୁ ମିଶ୍ରେ ! ମୁଠେ ପେଟ ପୁରେଇ ଖାଇବତ ଏତେ ଚିନ୍ତା କାହିଁକି ? ଆସ ମୋ ସଙ୍ଗେ ଆସ ।

ଅଗାଧୁ—ଆଉ କିଛି ନାହିଁ, ବାପ, ମୁଠେ ପେଟପୂରକର ଖାଇବ । ଆଉ ମୁଠେ ଗାମୁଛା କାନିରେ ବାନ୍ଧ ବ୍ରାହ୍ମଣୀ ପାଇଁ ନେବି ।

ଅନାମ—ଆଚ୍ଛାହେଉ ମିଶ୍ରେ ଚିନ୍ତାନାହିଁ, କିନ୍ତୁ ମୁଁ ଭଲ ସାମଗ୍ରୀ ଦେଇ ପାରିବି ନାହିଁ, ଗରିବଲୋକ ଯାହାଦେବି ତା ନେବ ।

ଅଗାଧୁ—ଆରେ ସେଥିପାଇଁ କିଛିନାହିଁ । ତୁ ଯାହାଦେବୁ ମୋର ସେହି ଯଥେଷ୍ଟ, କିରେ ଆମ ନା ମିଶ୍ରେ କାହିଁକି ହୋଇଛି ଜାଣୁ ?

ଅନାମ—ନା ।

ଅଗାଧୁ—ଆରେ- ଆମକୁ ପଖାଳ ଦିଅ, ଚୂଡ଼ା ଦିଅ, ମୁଢ଼ି ଦିଅ, ଯାହା ଖାଇବାକୁ ଦିଅ ତା ସଙ୍ଗେ ପଇସାଟିଏ କି ଅଧଲାଟିଏ ମିଶାଇ ଦେଲେ ଆମର ଆତ୍ମବୋଧ ହୁଏ ବୋଲି ଆମନା ମିଶ୍ରେ ହୋଇଛି ! ହଁ, ହଁ ଯେତେ ଖାଇବାକୁ ଦେଲେ କଣ ହେବ ? କିଛି ଦକ୍ଷିଣା ତାସଙ୍ଗେ ନମିଶାଇଲେ ସବୁ ମାଟି । ତୁତ ସବୁ ଜାଣୁ ବାଦ । ବର୍ତ୍ତମାନ କ୍ଷୁଧା କହୁଛି ସ୍ୱହଂଗଛ, ଆଉ ମୁଁ କହୁଛି ଅନାମଂପୁଛ ।

ଅନାମ—ହଉତେବେ ଆସ ମିଶ୍ରେ, ଘରକୁ ଆସ ।

ଅଗାଧୁ—ହେଉ ବାପ ! ଚାଲ । ଈଶ୍ୱର ତୋର ବଢ଼ନ୍ତି କରନ୍ତୁ ।

( ଉଭୟଙ୍କର ପ୍ରସ୍ଥାନ )

ଠ:❋:ଠ

ତୃତୀୟଦୃଶ୍ୟ-ଉଦ୍ୟାନ
( ରାଣୀ ସୁଶୀଳା ସୁନ୍ଦରୀଙ୍କର ପ୍ରବେଶ )

ରାଣୀ—ଆଜ ଉଦ୍ୟାନରେ କେତେ ଜାତର କେତେଫୁଲ ଫୁଟିଛି । ବାଛି୨ ଭଲଫୁଲଗୁଡ଼ିକ ନେଇ ମାଳା ଗୁନ୍ଥିବି । ମୋର ଆରାଧ୍ୟ ଦେବତାଙ୍କୁ ଉପହାର ଦେଇ ତାଙ୍କର ଉପଯୁକ୍ତ ଅର୍ଚ୍ଚନା କରିବି ଆଉ ମୋର ତାପିତ ପ୍ରାଣକୁ ଶୀତଳ କରିବି ।

(ସଖୀମାନଙ୍କର ଗୀତ ଗାଇ୨ ପ୍ରବେଶ)

ଗୀତ

କହ କୁସୁମ ରାଣୀ,
କଳାଭ୍ରମରେ କପାଁଳେ ହାଣୁଚୁ ଠାଣି ।୦।
କେତେ ସୁନ୍ଦର ନାଗରବର ସୁଷମାଙ୍ଗେ ରୂପ କ ମନୋହର,
ରଙ୍ଗକାଳ ପୀତଦେହ ନନ୍ଦନ ମଣି । ୧ ।
ତୋର ଦୋଷ ନାହିଁ ଏଥି, ଏହାପରା ଭବରୀତ
ଯେ ଯା ଭାବେ ମନ୍ତେ ହରେ, ସେହି ତାର ଗୁଣମଣି । ୨ ।

--୦--

୧ମ ସଖି—ମହାରାଣୀ ! ଯୁବରାଜଙ୍କ ସଙ୍ଗେ ସାହାପୁରର ଯେମାଙ୍କର ବିବାହ ହେବାର ଯେଉଁ ପ୍ରସ୍ତାବ ହୋଇଥିଲା, ସେହି ସମ୍ବନ୍ଧରେ ସେଠାରୁ ଜଣେ ଦୂତ ଆସିଛି । ବିବାହ ବିଷୟରେ ଆପଣଙ୍କର ମତାମତ ମହାରାଜ ଜାଣିବାକୁ ଚାହାନ୍ତି ।

ରାଣୀ—ମୋର ମତର ଆବଶ୍ୟକ ନାହିଁ, ମହାରାଜାଙ୍କର ଯେପରି ଇଚ୍ଛା ସେଥିରେ ମୋହର କୌଣସି ଆପତ୍ତିନାହିଁ ।

୧ମ ସଖି—ତେବେ ଶ୍ରୀଚ୍ଛମୁରେ ଏହି କଥା ଜଣାଇବୁ ?

ରାଣୀ—ହଁ, ତୁମ୍ଭେମାନେ ଏହିକଥା ଜଣାଅ ।

( ସଖିମାନଙ୍କର ପ୍ରସ୍ଥାନ )



କଣ ? ଅମର ବଡ ରାଣୀର ପୁଅ ବୋଲି; ସେ ରାଜା ହେବ । ରାଜା ଅଉ ତାର ସ୍ତ୍ରୀ ହେବ ରାଣୀ, ଅଉ ମୋର ହତଭାଗ୍ୟ ଅଜୟ ତାର ହୁକୁମର ଚାକର ହୋଇ ଚିରଦିନ ଦ୍ୱାନ ଭାବେ ରାଜ ଭବନରେ ରହିଥିବ ? ନା, ନା, ଏହାତ ମୁଁ ସହି ପାରିବି ନାହିଁ, କେତେବେଳେ ହେବନାହିଁ । ଏହା କଦାପି କରାଇ ଦେବ ନାହିଁ । ସେଥିପାଇଁ ଉପାୟ କରିବାକୁ ହେବ । ବୃଦ୍ଧ ରାଜା ଓ ଅମର ଏହି ଦୁଇଟି ମୋର ଅଭିଷ୍ଟସିଦ୍ଧି ପଥରେ କଣ୍ଟକ । ଏହି ଦୁଇଟି ଯାକ କଣ୍ଟକ ଦୂର ନକଲେ ମୋର ଅଭିଳାଷ ପୂର୍ଣ୍ଣ ହେବ ନାହିଁ । ରାଜା ମତେ ଖୁବ ଭଲ ପାଆନ୍ତି, ସେତ ମୋର ହାତରେ କୁଣ୍ଢେଇ । ତାଙ୍କୁ ଯେମେନ୍ତ ମୁଁ ନଚାଉଛି, ଠିକ୍ ସେମିତି ନାଚିବ । ସୁତରାଂ ସେ କଣ୍ଟକଟି ଦୂର କରିବା ନିଜ ହାତର କଥା । ତାପର ମୋର ହୃଦୟ ସର୍ବସ୍ୱ ପ୍ରାଣର ପ୍ରାଣ ଆରାଧ୍ୟ ଦେବତା ଗୁଣଧରଙ୍କୁ ପୁଷ୍ପହାରରେ ମୋର ହୃଦ-ସିଂହାସନରେ ବାନ୍ଧି ରଖିବି । କିନ୍ତୁ ତା ପୂର୍ବରୁ ଦ୍ୱିତୀୟକଣ୍ଟକ ଅମର ସିଂହକୁ ଦୂର ନ କଲେ ମୋର କାର୍ଯ୍ୟ ସିଦ୍ଧ ହେବ ନାହିଁ । ସେଥି ପାଇଁ କି ଉପାୟ କରିବି ? ( ଭାବି ) ହଁ, କଣ୍ଟକେ ନେବି କଣ୍ଟକ, ତାପରେ ଏହି ଦୁଇ କଣ୍ଟକ ଅପ-ସାରିତ କରି ଦେଲେ ଅଜୟର ପଥ ପରିଷ୍କାର ହୋଇ ଯିବ । ଅଜୟକୁ ସିଂହାସନରେ ବସାଇବି, ଅଉ ମୋର ପ୍ରାଣପ୍ରତିମା ହେବେ ତାର ମନ୍ତ୍ରୀ ଓ ମୋର ଜୀବନସର୍ବସ୍ୱ । ଯାଏଁ, ବିଳମ୍ବ ହେଉଛି । ରାଜାଙ୍କର ଆସିବାର ସମୟ ହେଲଣି । ଅଭିମାନ କରି ବସେ ।                                          ( ପ୍ରସ୍ଥାନ )

— ✲ —

## ଚତୁର୍ଥ ଦୃଶ୍ୟ — କକ୍ଷ ।

( ରୋହିଣୀର ପ୍ରବେଶ । )

ଗୀତ ।

ଯେତେବେ ମୋ ଭାଗ୍ୟ ହସିବ,
ତମନାଶା ଉଷା ପସରି ଗଗନେ ନବୀନ କିରଣେ ଭାତିବ । ° ।
ଛଳନାରେ ଆଶା ଭୁଲାଉଛି ମନ,
କଳନାରେ ତଳ ନପାଏ ବହନ ।
କୋମଳ କୋରକେ କୀଟର ଦଂଶନ କେମନ୍ତେ ଏହା ସହିବ । ୧

ରୋହିଣୀ — ସତେ ମୋର ଆଶା-କୁସୁମ ଫୁଟିବ ? ସତେ ମୋର ପ୍ରାଣ ପ୍ରତିମାଙ୍କୁ ପାଇବି । ସେହି ପ୍ରଥମ ଦେଖା । ଯେତେବେଳେ ଦୁର୍ଗଦ୍ୱାର ସମ୍ମୁଖରେ ସୈନିକମାନଙ୍କର ଭୀଷଣ କୋଳାହଳ ଓ ଗୃହଆହତ ମୁମୂର୍ଷୁର ଆର୍ତ୍ତନାଦ ମଧ୍ୟରେ ଶ୍ରାନ୍ତ ଅବସନ୍ନ ହୋଇ ମୂର୍ଚ୍ଛା ଯାଇଥିଲେ । ପାଣି୨ ବୋଲି ଡାକୁଥିଲେ । ସେହି ପ୍ରଥମ ଦେଖା । ଏ ପର୍ଯ୍ୟନ୍ତ ସେହି ଶେଷ ଦେଖା । ଆହା ! କି ଉଦାର କମନୀୟ ମୁଖଶ୍ରୀ ! ଥରେମାତ୍ର ଦେଖିଛି ! କିନ୍ତୁ ଜୀବନରେ ତାହା ଭୁଲି ପାରିବି ନାହିଁ । ସେହି ପ୍ରଥମ ସାକ୍ଷାତ ହେବାବେଳେ ମୁଁ ମୋର ସ୍ୱାଧୀନତା ହରାଇଅଛି । ତୁମ୍ଭଙ୍କୁ ଆତ୍ମସମର୍ପଣ କରିଛି । ମନେ୨ ତୁମ୍ଭଙ୍କୁ ମୋର ହୃଦ-ସିଂହାସନର ଅଧିକାରୀ କରିଛି । କିନ୍ତୁ ମୋର ଆଶା କି କେବେ ସଫଳ ହେବ ?

[ ବିମଳାର ପ୍ରବେଶ ]

ବିମଳା—ରୋହିଣୀ ! କଣ କରୁଛୁ ? ଏକୁଟିଆ ବସି କଣ ଭାବୁଛୁ ?



ରୋହଣୀ—ନାହିଁ ବିମଳା, କିଛି ନାହିଁ । ଖରବୃଲେ ବାମନ ହୋଇ ଚନ୍ଦ୍ରଙ୍କୁ ହାତ ବଢାଇବା ମହା ବିଡ଼ମ୍ବନା ! ମର୍ତ୍ତ୍ୟବାସୀହୋଇ ଆକାଶ କୁସୁମ ପାଇ ଚେଷ୍ଟାକରିବା ବୃଥା । ବିମଳା ! ଯେତେ୨ ବିଳମ୍ବ ହେଉଛି ମୋର ତେତେ ଉପର ଆଶା କମିଯାଉଛି । ସତେ ମୋର ଆଶା ମେଣ୍ଟିବ ବିମଳା ?

ବିମଳା—ଏତେ ଚନ୍ତା କାହିଁକି ସହ ! ମା'ତ ତୁମ୍ଭର ମନୋଗତ ପାଂବ ସ୍ଥିରକରିଛନ୍ତି । ରାଜା ମଧ୍ୟ ସତ୍ୟ କରିଛନ୍ତି ଏଥିରେ ଆଉକଣ ସନ୍ଦେହ ଅଛି ?

ରୋହଣୀ—ଶୁଣୁଛୁ ବିମଳା ! ମା ଯେଉଁ ଦୂତ ପଠାଇଥିଲେ ତାର କି ଉତ୍ତର ଆସିଛି ?

ବିମଳା—ନା ସଖି ! କଣ ଜବାବ ଆସିଛି ।

ରୋହଣୀ—ରାଜା ସମ୍ବାଦ ଦେଇଅଛନ୍ତି ଯେ ଆଉ ୨।୪ ମାସ ପରେ ବିଭାଘର ହେବ, ମୋର କାହିଁକି ଉପରେ ସନ୍ଦେହ ହେଉଛି

ବିମଳା—ସନ୍ଦେହ କରିବାର କୌଣସି କାରଣ ନାହିଁ । ନିଶ୍ଚୟ ଯେତେ-ବେଳେ ହେବାର କଥା ଆଉ ୨।୪ ମାସ ପାଇଁ କଣ ଅଛି ?

ରୋହଣୀ—ବିମଳା ! ମୋର ଯେପରି ମନର ଭାବ, ତୋର ସେପରି ହୋଇଥିଲେ ବୁଝନ୍ତୁ ! ଚାଲ, ମାଁ ତେଣେ ଖୋଜୁଥିବେ ।

=o= ( ଉଭୟଙ୍କର ପ୍ରସ୍ଥାନ )

ପଞ୍ଚମ ଦୃଶ୍ୟ---ଶୟନ କକ୍ଷ

(ରାଣୀ ସୁଶୀଳା ସୁନ୍ଦରୀ ପଲଙ୍କଉପରେ ଆସୀନା)

( ରାଜାଙ୍କର ପ୍ରବେଶ )

ରାଜା—(ରାଣୀଙ୍କଠାରେ ହାତଦେଇ) ପ୍ରାଣେଶ୍ୱରୀ !

କେଉଁ ଅପରାଧ ଆଜ

ଚନ୍ଦ୍ରମା ବଦନେ ତବ ନାହିଁ ଦେଖେ ହାସ୍ୟରେଖା ?

ରାଣୀ—(ରାଜାଙ୍କର ହାତ ଫୋପାଡ଼ ଦେବା) ଓ ( ଅନ୍ୟଦଗଲୁ ମୁଖ କରିବା )

ରାଜ—ଚନ୍ଦ୍ରାନନ !

ଅମରର ବିବାହ ବାରତା
ଦେବାକୁ ବିଳମ୍ବ ଦେଖି
ବହୁଛକ ମନେ ରୋଷ ?

ରାଣୀ—ମହାରାଜ !

ନୁହିଁଇ ମୁଁ ପ୍ରାଣେଶ୍ୱରୀ ତବ,
ଅଭାଗିନୀ ଭିଖାରୁଣୀ ମୁହିଁ
ଭିକ୍ଷାଲାଗି ଆସି ତବଗୃହେ
ରହିଅଛି ସଦା ଦାସୀ ହୋଇ ।

ରାଜା—ନକର ଛଳନା ଆଉ ପ୍ରିୟତମେ !
ଏକ କଥା କହ ଚନ୍ଦ୍ରାନନୀ ?
ଅଟ ତୁମ୍ଭେ ଦାସୀ ମୋର ?
କେସନେ ଆଣିଲ ମୁଖେ ଏସନ କୁଞ୍ଚିତଭାଷା ?
କିଛିମାତ୍ର ନପାରଇ ବୁଝି
ଦୟାକରି ଫେଡ ମୋ ସଂଶୟ ।

ରାଣୀ—ମହାରାଜ ! ବୁଝିବ ପଶ୍ଚାତେ
ବିଦାୟ ଦିଅନ୍ତୁ ମତେ, ଯାଏ ମୁହିଁ, ପିତାଳୟେମନ ।
କଣ୍ଟିନ୍ତ ହୋଇଣ ନାଥ, ସୁଖେ କର ରାଜ୍ୟଭୋଗ ।

ରାଜା—ଏକ କଥା କହପ୍ରିୟେ !
କହ ଶୀଘ୍ର କହସଖି ! ସମସ୍ତ ବାରତା ।

ରାଣୀ—ଦୁଃଖିନୀ ରମଣୀ ମୁହିଁ ଚିରଅଭାଗିନୀ ।
ପ୍ରତ୍ୟୁତ୍ତ୍ୱ ବାକ୍ୟମମ ହୋଇବ ତୁମ୍ଭର ?

ରାଜା—ଏକକଥା ପ୍ରାଣେଶ୍ୱରୀ ! ଅବିଶ୍ୱାସ !
ଅବିଶ୍ୱାସ ପ୍ରାଣର ପ୍ରତିମା ପାଶେ ?
ଶୁଣପ୍ରିୟେ ସତ୍ୟବାଣୀ ମମ,
ପଶ୍ଚିମ ଗଗନେ ଯଦି ସୂର୍ଯ୍ୟଦେବ ହୁଅନ୍ତି ଉଦୟ
ନିଷ୍ପ୍ରଭ ହୁଅନ୍ତି ଯେବେ ଗ୍ରହ ତାରା ନକ୍ଷତ୍ର ନିକର
ଧରା ଯଦି ଏହି ଦଣ୍ଡେ ଯାଏ ରସାତଳେ-
ତଥାପି ହେ ବାକ୍ୟ ତବ
ମୁହୂର୍ତ୍ତକ ପାଇଁ ନକରିବି ଅବିଶ୍ୱାସ ।
କହ ପ୍ରିୟେ ! କହହେ ତ୍ୱରିତେ
କିବା ଦୁଃଖେ ଅସ୍ଥିରପରାଣ ତବ
ରାଣୀ—ମହାରାଜ !
କେମନ୍ତେ କହିବି ଯେହ୍ନ ଘୋର ଅପମାନ ବାର୍ତ୍ତା ।
କହିବାକୁ ସେ କୁତ୍ସିତ କଥା ଲାଗଇ ସରମ,
ମୁଖେ ନିଷ୍ଫୁରେ ବଚନ ।
ରାଜା—କହପ୍ରିୟେ ! କହହେ ସତ୍ୱର
ତୁମ୍ଭ ଆମ୍ଭ ବେଳମଧ୍ୟେ ନହୋଇଛି କେଉଁ କଥା ?
କିବା କହିବାକୁ ତୁମ୍ଭେ ହେଉଛ ଲଜ୍ଜିତା ,
ଶୁଣ ରାଣୀ ! ଶୁଣ ମୋ ପ୍ରତିଜ୍ଞା,
ହୁଏ ଯଦି ଦୋଷୀ କେହି ଜନ
ପୁତ୍ର କନ୍ୟା ଅବା ବନ୍ଧୁ ପରିଜନ
ନିର୍ବିଶେଷେ ଦେବତାରେ ଶାସ୍ତି
ମମକୋପୁଁ ନାହିଁ ତ ନିସ୍ତାର ତାର ।
ହେଲେ ପ୍ରିୟଜନ, ଛେଦିବାକୁ ଶିରତାର



ତଳେମାନ ନହେବ କୁଣ୍ଠିତ ।
କମ୍ପା ଅର୍ପିବାକୁ ହୁଏ ଯେବେ ରାଜସିଂହାସନ
ଅକାତରେ ହାସ୍ୟମୁଖେ ଦେବ ବସର୍ଜ୍ଜନ ।
ରାଣୀ—ଶୁଣ ତେବେ ମହାରାଜ ! କାପୀର ବଚନ
ଅତ ପ୍ରତ୍ୟୁଷରୁ ଆଜ ପୁଷ୍ପ ଉପବନେ
ବୁଲି୨ କରୁଥିଲି ଯତ୍ନେ ଆହରଣ
ନାନା ଜାତ ଫୁଲ, ତହିଁ ଗୁନ୍ଥିବ ଅନନ୍ଦେ ବୋଲି
ମନୋହର ପୁଷ୍ପମାଳା ଶ୍ରୀସ୍ୱାମୀଙ୍କ ଲାଗି
ଏ ସମୟେ ଜ୍ୟେଷ୍ଠସୁତ ତବ ପ୍ରବେଶି ଉଦ୍ୟାନ
ପଛୁ ପ୍ରାଣେଶ୍ୱରୀ ! ବୋଲି କଲା ସମ୍ବୋଧନ
ପାପଅଭିଳାଷ ତାର କରିଲା ପ୍ରକାଶ ।
(କୃତ୍ରିମ କନ୍ଦନ କରି) ମହାରାଜ ! ଏହା କ ଶୁଣିବ ବୋଲି
ଆସିଅଛି ଏ ଅଭାଗିନୀ ରାଜଗୃହେ ?
ପୁତ୍ର କ ଡ଼ାକିବ ପ୍ରାଣେଶ୍ୱରୀ ବୋଲି ?
କେମନ୍ତେ ସହିବ ମୁହିଁ ଏସନ କୁତ୍ସିତ କଥା
କବା ପ୍ରୟୋଜନ ଏହି କ୍ଷୁଦ୍ରପ୍ରାଣେ ।
ନଶ୍ଚୟ ତେଜିବ ମୁହିଁ ଏପାପ ଜୀବନ ।
ରାଜା—(ସଚକତେ)ଭଗବାନ ! ଆଜ ଏକ ଦୃଶ୍ୟ ଦେଖାଉଛ ? କର୍ଣ୍ଣ
ତୁ ଏହି ପାପ କାହାଣୀ ଶୁଣିବା ପୂର୍ବରୁ ବଧିର ହୋଇ ଗଲୁଁ
ନାହିଁ କାହିଁକ ? ଆକାଶ ! ତୁମ୍ଭେ ଶତଖଣ୍ଡ ହୋଇ ମୋର
ମସ୍ତକ ଉପରେ ଅଗ୍ନି ବର୍ଷଣ କରୁନାହିଁ କାହିଁକ ? ଗ୍ରହଗଣ
ତୁମ୍ଭେ ଏତେ ବଡ ଅନୀତ ଦେଖି ସୁଦ୍ଧା କକ୍ଷଚ୍ୟୁତ ହେଉନାହ
କାହିଁକ ? ଅସ୍ତୁ ପ୍ରଭଞ୍ଜନ ଝଟିକା ବେଗରେ ଏହି ପାପଭାର

ପୃଥିବୀ ବକ୍ଷରୁ ମାନବ ସୃଷ୍ଟିକୁ ଲୋପକରଦିଅ । ସାଗରଭୂମିର ଉତ୍ତାଳ ତରଙ୍ଗ ମାଳା ଏହି ପାପଧାମକୁ ତୁମର ଅନନ୍ତ ଜଳରାଶିରେ ନିମଜ୍ଜିତ କରିଦିଅ । ଭଗବତୀ ବସୁନ୍ଧରେ ଏତେ ଗୁରୁଭାରରେ ମଧ୍ୟ ଦ୍ୱିଧାହୋଇ ଯାଉନାହିଁ ? ଅମର ! ଅମର ! ତୁ କରୁଛୁ କଅଣ ? ତୁଚ୍ଛ କ୍ଷଣିକ ଭୋଗ ଲାଳସାର ବଶବର୍ତ୍ତୀ ହୋଇ ଏପରି ଅଲୌକିକ ଆଚରଣ କରିବାପୂର୍ବରୁ ତୋର ଜିହ୍ୱା ସଙ୍କୋଚିତ ହୋଇଗଲା ନାହିଁ ? ତୁ ପରା ମୋ ସିଂହାସନର ଭାବୀ ଉତ୍ତରାଧିକାରୀ, ଏତେ ନୀଚ, ଏତେଘୃଣ୍ୟ ତୁ ? ତୋର ସମୁଚିତ ଶାସ୍ତି ବିଧାନ ନକରିବା ଯାଏ ମୋର ପ୍ରାଣରେ ଶାନ୍ତିନାହିଁ।

[ପ୍ରସ୍ଥାନ]

ରାଣୀ—ଠିକ୍ ଔଷଧ ପ୍ରୟୋଗ କରିଛି । ମୋର ଶର ଯେପରି ଲକ୍ଷ ଭ୍ରଷ୍ଟ ନହୁଏ, ତାର ବନ୍ଦୋବସ୍ତ କରିବା ଆଗ ଦରକାର ।

(ପ୍ରସ୍ଥାନ)

—:o:—

ଷଷ୍ଠ ଦୃଶ୍ୟ—କକ୍ଷ

(ରାଜା ଓ ମନ୍ତ୍ରୀ ପ୍ରବେଶ)

ରାଜା—ମନ୍ତ୍ରୀ ! ଏବେ ସବୁ ଶୁଣିଲେତ ? ପାପାତ୍ମାର ଯେଉଁ ଦଣ୍ଡ କଳ୍ପନା କରିଛି ତାହା ଠିକ୍ ହୋଇ ନାହିଁ କି ?

ମନ୍ତ୍ରୀ—(ସ୍ୱଗତ) ଏହା କଣ ସତ୍ୟନା ସ୍ୱପ୍ନ ? ଏହା କି ମାନବ ଠାରେ ସମ୍ଭବ ? ବିଶେଷତଃ କୁମାରଙ୍କଠାରେ; ଏପରି ଉଦାର ହୃଦୟ ସରଳ ପବିତ୍ର ଚରିତ୍ର ଯୁବକ ତ କାହିଁ ଦେଖିନାହିଁ । ତାଙ୍କର କମନୀୟମୁଖ ମଣ୍ଡଳରେ କି ଅପୂର୍ବ ଆଭା ବିଦ୍ୟମାନ, ଦେଖିଲେ

ମନିହୁଏ ଯେ ସଂସାରର ଆବିଳତା ଯେପରି ଏହାଙ୍କୁ ସ୍ପର୍ଶ କରି ନାହିଁ । ମୋର ତ ବିଶ୍ୱାସ ହେଉନାହିଁ [ପ୍ରକାଶ୍ୟ] ମହାରାଜ ! ମୋର କିପରି ସନ୍ଦେହ ହେଉଛି ।

ରାଜା—ତୁମ୍ଭର ସନ୍ଦେହ ହୋଇପାରେ, କିନ୍ତୁ ମୋର ଦୃଢ ବିଶ୍ୱାସ ହୋଇଛି ।

ମନ୍ତ୍ରୀ—କୁମାରଙ୍କ ସ୍ୱଭାବ ତ ଦେବ ସଦୃଶ ଥିଲା, ତେବେ ଭଲକରି ଅନୁସନ୍ଧାନ ନକରି ହଠାତ୍—

ରାଜା—କ୍ଷାନ୍ତ ହୁଅ ମନ୍ତ୍ରୀ, ଯଥେଷ୍ଟ ପ୍ରମାଣ ମିଳିଛି । ବର୍ତ୍ତମାନ ସେ ନରାଧମର ସମୁଚିତ ଶାସ୍ତି ବିଧାନ ନକରିବା ଯାଏ ମୋର କ୍ଷାନ୍ତି ନାହିଁ । ଦ୍ୱାରୀ !

[ଦ୍ୱାରୀର ପ୍ରବେଶ ଓ ପ୍ରଣାମ]

ଦ୍ୱାରୀ—ଆଜ୍ଞା ମହିମା !

ରାଜା—କୁମାରକୁ ବନ୍ଧନ କରି ଶୀଘ୍ର ଏସ୍ଥାନକୁ ଘେନିଆସ । ପାଷାଣ୍ଡର ସର୍ବ ସମ୍ମୁଖରେ ଦଣ୍ଡ ବିଧାନ କରିବାକୁ ହେବ ।

ଦ୍ୱାରୀ—ଯେ ଆଜ୍ଞା । [ପ୍ରସ୍ଥାନ]

(ଶୃଙ୍ଖଳାବଦ୍ଧ କୁମାରଙ୍କୁ ଘେନି ପୁନଃ ପ୍ରବେଶ)

ରାଜା—ପାମର, କାହିଁ ତୋର ଏହି ପ୍ରବୃତ୍ତି ଜନ୍ମିଲା ? ଏତେ ନୀଚ, ଏତେ ଘୃଣ୍ୟ ତୁହି ? ମତେ ଏହି ଯାତନା ଏହି ପ୍ରତିଦାନ ଦେବୁ ବୋଲି କି ଅଣ ମୋଠାରୁ ଜନ୍ମଗ୍ରହଣ କରିଥିଲୁ ? ନାରକୀ, ତୋର ବିହିତ ଦଣ୍ଡ ବିଧାନ ନକଲେ ମୋର ଅନ୍ତର ଶାନ୍ତ ହେବନାହିଁ ସମସ୍ତ ବିଦ୍ୟା ଅଧ୍ୟୟନର କଣ ଏହି ଫଳ ହେଲା ? ପାପପୁଣ୍ୟ ଧର୍ମାଧର୍ମର ଟିକିଏ ବିଚାର କଲୁନାହିଁ ?

ଅମର—ପିତା ! ମୁଁ ନିର୍ଦ୍ଦୋଷ ।

ରାଜା—ଚୁପ୍ କର ନରାଧମ ! ଆଉ ବୃଥା ଛଳନାରେ ପ୍ରୟୋଜନ ନାହିଁ ମୁଁ ସବୁ ବୁଝିଛି । ତୋପରି ପିଶାଚକୁ ଯେତେ ଗୁରୁ-ଦଣ୍ଡ ଦେଲେ ମଧ ତୋର ଦୋଷ ତୁଳନାରେ ତାହା କଛି ନୁହେଁ; ତୋ ପାପର ଯୋଗ୍ୟ ଦଣ୍ଡ ତାହା ସ୍ଥିରକର ପାରୁ-ନାହିଁ । ତୋପରି ନାରକୀ ପାଇଁ ନରକରେ ସୁଦ୍ଧା ଦଣ୍ଡନାହିଁ

ଅମର—ପିତା ! ଆପଣ୍ଣ ଯେଉଁଦଣ୍ଡ ଦେବେ ତାହା ମୁଁ ଅମ୍ଳାନ ବଦ-ନରେ ଗ୍ରହଣ କରିବ । ମୋର ରାଜସିଂହାସନରେ ପ୍ରୟୋଜନ ନାହିଁ । ପୁତ୍ର ହୋଇ ଯଦି ପିତାମାତାଙ୍କର କଷ୍ଟର କାରଣ ହେଲି, ତେବେ ଆଉ ମୋର ଜୀବନରେ କି ପ୍ରୟୋଜନ ? ପିତା ଆଦେଶ କରନ୍ତୁ ।

ରାଜା—ମନ୍ତ୍ରୀ ! ଏ ନରାଧମକୁ ଶୀଘ୍ର ନେଇଯାଅ, ଘାତକକୁ ଡକାଇ ଏହାର ମସ୍ତକକାଟି ରକ୍ତଆଣି ମତେ ଦେଖାଅ !

ମନ୍ତ୍ରୀ—ମହାରାଜ ! କୁମାର ଅଳ୍ପ ବୟସ୍କ ! କୁମାରଙ୍କ ପ୍ରତି ଏପରି ଦଣ୍ଡ !

ରାଜା—ନା ମନ୍ତ୍ରୀ-ବିଗ୍ରହକ୍ଷେତ୍ରରେ ସ୍ନେହ ମମତାର ସ୍ଥାନନାହିଁ । ତାହା କେବଳ ତୁମ୍ଭର ଦୁର୍ବଳତା ! ଏପାପିଷ୍ଠକୁ ଶୀଘ୍ର ଶ୍ମଶାନକୁ ନେଇଯାଇ ଏହାର ମସ୍ତକ ଛେଦନ କରି ରକ୍ତ ଆଣି ମୋତେ ଦେଖାଅ । ଯାଅ ।

(ଉଭୟଙ୍କର ଉଭୟ ଦିଗରେ ପ୍ରସ୍ଥାନ)

—:o:—

ସପ୍ତମ ଦୃଶ୍ୟ—ରାଜପଥ

(ଗ୍ରାମବାସୀଗଣ ପ୍ରବେଶ)

୧ ଅମ—ଏ ଦେଶରେ ଆଉ ରହିବା ଉଚିତ ନୁହେଁ ଯେଉଁଠାରେ ନ୍ୟାୟ ନାହିଁ, ଧର୍ମ ନାହିଁ ସେ ଦେଶରେ ବାସକରିବାଠାରୁ

ମୃତ୍ୟୁ ଶ୍ରେୟସ୍କର । ଭଗବାନ ! ତୁମ୍ଭ ରାଜ୍ୟରେ କଣ ନହେଉଛି !

ଦ୍ୱିତୀୟ—କହୋ ଭାଇ ! ଆଜିତ କାହିଁକି ଭଗବାନ ତମର ଦିର ମନେ ପଡ଼ି ଯାଉଛନ୍ତି ? କଥାଟା କ ? ଟିକିଏ ଖୋଲିକରି କହିଲେ ଭଲ ହୁଅନ୍ତା ନାହିଁ ?

ପ୍ରଥମ—ତମେ କିଅଣ ଜାଣିନାହିଁ ଯେ ପଗ୍ଭରୁଛ ? ଯୁବରାଜଙ୍କ ମୃତ୍ୟୁରେ ରାଜ୍ୟର ଘରେ୨ କନ୍ଦନର ରୋଳ ଉଠୁଛି । ସମସ୍ତେ ହାହାକାର କରୁଅଛନ୍ତି । ନ୍ୟାୟର ଏପରି ଅପବ୍ୟବହାରରେ କିଏ ବିଚଳିତ ନହେବ ?

ଦ୍ୱିତୀୟ—ତାହାହେଲେ ତୁମେ କଣ କହୁଛ ଯେ ରାଜା ଅମର ଅନ୍ୟାୟ କରି ଅଛନ୍ତି ? ତାହା କେବେ ନୁହେଁ । ଅମରରାଜାଟିକ୍ ନ୍ୟାୟବିଗ୍ଭର କରି ଅଛନ୍ତି । ଆଗୁ କହିଲ ଭଲା ତମେ, ଯଦି ନ୍ୟାୟପତି ହୋଇଥାନ୍ତ ଏପରି କାର୍ଯ୍ୟରେ କି ଦଣ୍ଡ ଦେଇଥାନ୍ତ। ସେ ଟୋକାଟା ଯେପରି ଉଦ୍ଧତ ହୋଇ ପଡ଼ିଲା, ତାରତ ଆଜ କିଛି ଠିକ ରହିଲା ନାହିଁ । ଦୋଷ ଅନୁଯାୟୀ ରାଜା ଦଣ୍ଡ ଦେଇ ଅଛନ୍ତି । ଏଥିରେ ତାଙ୍କର ଦୋଷ କଣ ?

ପ୍ରଥମ—ରାମ, ରାମ, ଏପ୍ରୁ ପଡ଼ିଲେଇଲେ ରକ୍ଷା ।

ତୃତୀୟ—ତମେ ଯାହା କହିଲ ତାହାଠିକ, ତେବେ ବିଗ୍ଭର ତ ଅଛି ?

ଦ୍ୱିତୀୟ—ନାହିଁ, ରାଜା ନିଜର ପୁଅବୋଲି ବିଗ୍ଭର କଲେ ନାହିଁ ଏଇଟା ହେଲା ଅବିଗ୍ଭର ?

ପ୍ରଥମ—ନା, ସୁବିଗ୍ଭର, ରାଜାର ଯୋଗ୍ୟ ପାଙ୍କ ଏକା ।

ତୃତୀୟ—ତାହାନୁହେଁ । ତେବେ ଦୁଇ ପକ୍ଷକୁ ଏକତ୍ର କରି, ଦୁଇ ତରଫରୁ ବକ୍ତବ୍ୟ ଶୁଣି ଯେ ବିଗ୍ଭର କରାଯାଏ, ତାକୁ ବିନା

ନ୍ୟାୟବିଚାର କହନ୍ତି, ଏପରି ଏକ ତରଫା ଜଣେ ଯାହା କହି ଦେଲା ତହିଁରେ ବିଶ୍ୱାସ କରି ଅନ୍ୟ ତରଫରୁ କିଛି ନ ଶୁଣି ଦଣ୍ଡଦେବା ଅନ୍ୟାୟ । ରାଜା ଯଦି ସବୁ ଶୁଣି ଦୋଷାଦୋଷ ବିଚାର କରି ଥାନ୍ତେ, ତେବେ କିଏ କାହିଁକି କିଛି କହନ୍ତେ? ତୁମେ କଣ ଜାଣନାହିଁ ଯୁବରାଜ ଉପରେ ସଂଧୂ ଚରିତ୍ର ଓ ସରଳ ହୃଦୟ ଲୋକ, ସମସ୍ତଙ୍କ ପ୍ରତି ତାଙ୍କର ଉପର ବ୍ୟବହାର ଏହା ନାକେ ଜାଣି ରାଜା ସମସ୍ତ ବିଷୟ ଅନୁସନ୍ଧାନ ନକରି ହଠାତ୍ ଏପରି ଅଜ୍ଞାଦେବା କଣ ଉଚିତ ହୋଇଛି ?

ଦ୍ୱିତୀୟ—ତେବେ ତମ ମତରେ ରାଣୀସାହେବ ମିଥ୍ୟା ବାଦିନୀ ?

ତୃତୀୟ—ଆହେ, ରାଣୀ ଏବେ ମିଥ୍ୟାବାଦିନୀ ନହୋଇ ସତ୍ୟବାଦିନୀ ହୁଅନ୍ତୁ ତେବେ ରାଜା ବିଚାରାସନରେବସି ଉଭୟ ତରଫ ଶୁଣି ବିଚାର କରିବେ ନା ଜଣେ ଯାହା କହିଲା ସେଥିରେ ବିଶ୍ୱାସ କରି କାର୍ଯ୍ୟ କରିବେ ?

ପ୍ରଥମ—ହେ ଗୁଲ ହୁଇ ? ସେ ଗୋଲମଣ୍ଡା ସଙ୍ଗେ କାହିଁକି ବକରି ହେଉଛୁଁ ! ଆସ ଆମେ ଯିବା, ଈଶ୍ୱରହିଁ ବଡ଼ଲୋକ, ତେବେ ସବୁ କାର୍ଯ୍ୟ ଦେଖି ଲୋକଙ୍କରତ ଧର୍ମପ୍ରତି ଅସ୍ଥା ରହୁ ନାହିଁ, ଅମର କଣ ଅଛି, ଆ ହୁଇ ଯିବା ।

(ସମସ୍ତଙ୍କର ପ୍ରସ୍ଥାନ)

ଃଃ୦ଃଃ

ଅଷ୍ଟମଦୃଶ୍ୟ ଶ୍ମଶାନ

(ଘାତକ ଦ୍ୱୟ ଅମରସିଂହଙ୍କୁ ନେଇ ପ୍ରବେଶ)

୧ମ ଘା !—କୁମାର ! ଏହିତୁମର ବଧ ଭୂମି । ଏହି ଶ୍ମଶାନ ଭୂମି ଶରୀ ଲୋକଙ୍କର ଶେଷ ଅଶ୍ରୟ ସ୍ଥାନ ।

ଅମର—ନା ଭାଇ ଘାତକ ! ଏହା ମନୁଷ୍ୟର ଶେଷ ଆଶ୍ରୟସ୍ଥାନ ନୁହେ ତାହା ଅନ୍ୟତ୍ର । ଆମ୍ଭେମାନେ କେବଳ ମୋହାନ୍ଧ ହୋଇ ଏହି କ୍ଷୁଦ୍ର ମାନବ ସଂସାରକୁ ସୃଷ୍ଟିର ଆରମ୍ଭ ଓ ଶେଷ ବୋଲି ଭାବ ଥାଉଁ । ଆମ୍ଭମାନଙ୍କର ଶେଷ ଆଶ୍ରୟ ସ୍ଥାନ ସେହି ପର ପାରରେ, ଯେଉଁଠାରେ ରାଜା ପ୍ରଜାର ଧନୀ ଦରିଦ୍ରର ପ୍ରଭେଦ ନାହିଁ, ଯେଉଁଠାରେ ଜଣଙ୍କର ସ୍ୱାର୍ଥସିଦ୍ଧି ପାଇଁ ଅନ୍ୟ ଜଣ-ଙ୍କର ସର୍ବନାଶ ହୁଏନାହିଁ, ହିଂସା, ଦ୍ୱେଷ, କାମ, ଓ କ୍ରୋଧ ପାପରୂପ ଆବର୍ଜନା ପ୍ରବେଶ କରିପାରେ ନାହିଁ । ମୁଁ ଆଜ ସେହି ସ୍ଥାନକୁ ଯାଉଅଛି । ତୁମ୍ଭେମାନେ ଜାଣିବ । ତୁମ୍ଭର ରାଜା ମଧ୍ୟ ଦିନେ ଯିବେ ।

୧ମ ଘା !—କୁମାର ! ଆମେତ ରୋଜ୨ ଦୁଇଟା ଗୋଟାଏ ଆଣି ଛେଳ କାଟିଲା ପର କାଟୁଛୁ । ଆଜ ମଧ ତୁମ୍ଭଙ୍କୁ କାଟିବୁ, ତୁମେ ଯେ କହୁଛ ଅନ୍ୟ ସ୍ଥାନ କଥା, ଆମ ଦେଶରେତ ସେପରି ସ୍ଥାନ କାହିଁ ନାହିଁ, ଥିଲେ ଦିନେ ହେଲେ ମହାରାଜା ଆମକୁ ସେଠାକୁ ପଠାଇ ଥାନ୍ତେ ।

ଅମର—ନା ଭାଇ ! ତୁମ୍ଭେମାନେ ସେ ସ୍ଥାନ ଦେଖି ନାହିଁ ତୁମ୍ଭର ମହାରାଜା ମଧ ଦେଖି ନାହାନ୍ତି, ମୋହରେ ଯାହାର ଚକ୍ଷୁ ଜଡ଼ିତ ସେ ସେସ୍ଥାନ ଦେଖି ପାରିବ ନାହିଁ । କ୍ଷୁଦ୍ର ମାନବ ତାହାର ଦୃଷ୍ଟିର ସୀମାବଦ୍ଧ ।

୨ୟ ଘା !—ଅରେ ଭାଇ ! କୁମାର ସାହେବ କ ଦୋଷ କରିଥିଲେ ଯେ ତାଙ୍କର ଏପରି ଦଣ୍ଡ ହେଲା ?

୧ମ ଘା—ଅରେ ଅମର ଏତେ କଥାରେ କାମ କଣ ? ଆମେ ହୁକୁମର ଗୁଲାମ, ହୁକୁମ ବଜାଇବା, ଏତେ କଥାରେ ଆମକୁ କଣ ମିଳିବ ?

୨ୟ ଘା !—ନାରେ ଭାଇ ! ମିଳିବା କଥା ନୁହେଁ ଭୟ ତେବେ ମହାରାଜ ନିଜ ପୁତ୍ର ପ୍ରତି ଏପରି ହୁକୁମ ଦେଲେ କାହିଁକି ?

୧ମ ଘା !—କିରେ ତୋର ମାୟା ଜନ୍ମିଲାଣି ନା କଣ ? ତେବେ ତୁ ଚାଲିଯା ମୁଁ କାମ କରେ ।

୨ୟ ଘା !—ଅରେ ମାୟା ଜନ୍ମିବ ନାହିଁ ? ଯେ କାଲି ରାଜା ହୋଇ ଶାସନ କରିଥାନ୍ତେ ତାଙ୍କ ପ୍ରତି ଏପରି ହୁକୁମରେ ମାୟା ହେବ ନାହିଁ ? ପୁଣି କୁମାରଙ୍କ ପରି ପିଲା- ଅହା ! ତୁ କଣ ଦେଖି ନାହୁଁ, ସେ କିପରି ଆମମାନଙ୍କ ପରି ଦୁଃଖୀର ଦୁଃଖ ଦେଖିଲେ ତରଳିଯାନ୍ତି, ଏଥିରେ ମାୟା ହେବ ନାହିଁ ?

ଅମର—ଭାଇମାନେ ! ଏ ସଂସାର ମାୟା ଜାଲରେ ଅବଦ୍ଧ, ଅମ୍ଭେ-ମାନେ ଖାଲି ବୃଥାମାୟାରେ ଅନ୍ଧ ହୋଇ ମୋର ପୁତ୍ର ମୋରସ୍ତ୍ରୀ ମୋର ବନ୍ଧୁ ମୋର ସବୁ ଭାବି, କିଛିଦିନ ପାଇଁ ମାୟା ସମୁ-ଦ୍ରର ତରଙ୍ଗେ୨ ନାଚି ଖେଳି ଚାଲିଯାନ୍ତି । ଏ ଭ୍ରମର ଜାଲ ଭେଦକରି ଦେଖ ଭାଇମାନେ ତାହାହେଲେ ସମସ୍ତବୁଝି ପାରିବ ଯେ ତୁମ୍ଭେମାନେ ଆସିଛ ଏକା, ଏକା ଚାଲି ଯିବ । ଦେଖ ତାର ଜ୍ୱଳନ୍ତ ପ୍ରମାଣ ମୁଁ ।

୨ୟ ଘା—ହଁ ଠିକ୍ । ଦେଖଭାଇ ମହାରାଜ ଯାହା କରିବେ କରନ୍ତୁ ପଛକେ ମୋଦେଇ ଏ କାମ ହେବ ନାହିଁ । ତୁ ପାରିବୁତ କର ନୋହିଲେ ଚାଲ ଏହାଙ୍କୁ ଛାଡିଦେଇ ଚାଲିଯିବା ।

୧ମ ଘା !—ଭାରି ଉପକାରିଆ ପୁରୁଷ ଟା । ଅରେ ତୁ କଣ ମୋର ପୁଅ ମାଇପଙ୍କୁ ପୋଷିବୁ କିରେ ? ଦେଖ କୁମର ! ବିଳମ୍ବକର ନାହିଁ ଶୀଘ୍ର ବସ ।

ଅମର—ନା ଭାଇ ! ମୁଁ ମରିବାକୁ ପ୍ରସ୍ତୁତ ହୋଇ ଆସିଛି । ମରିବାକୁ ମୋର ଭୟ ନାହିଁ, ତେବେ ମୃତ୍ୟୁ ପୂର୍ବରୁ ଥରେ ସେହି ଭବକାଣ୍ଡାରି ଶ୍ରୀହରିଙ୍କୁ ଡ଼ାକିବାକୁ ଅବସର ଦିଅ ।

୧ମ ଘା—କାହାକୁ ଡାକିବାକୁ କହିଲ, ହରିଙ୍କୁ ? କେଉଁ ହରିଙ୍କୁ ?

ଅମର—ସେହି ବିପଦବାରଣ କଳୁଷନାଶନ ଘନାର୍ତ୍ତିନାଶନ ହରିଙ୍କୁ । ଯାହାଙ୍କଠାରୁ ଏହି ସୃଷ୍ଟିର ଆରମ୍ଭ ଓ ଶେଷ । ଯେ ସର୍ବଦର୍ଶୀ ସର୍ବବ୍ୟାପୀ ହୋଇ ସବୁ ପାପପୁଣ୍ୟର ବିଚାର ଓ ଦଣ୍ଡ ବିଧାନ କରନ୍ତି, ସେହି ଅନାଥର ନାଥ ଗୋଲକ ବିହାରୀ ଦୀନବନ୍ଧୁ ପାଣ୍ଡବ ସାରଥିଙ୍କୁ ।

୧ମ ଘା—ଆମ ରଜାଠାରୁଁ କିଏ ବଡ଼ରଜା ?

ଅମର—ଭାଇ । ତୁମ୍ଭର ମହାରଜା ତ ସାମାନ୍ୟ ମାନବ ମାତ୍ର । ଯାହାଙ୍କର ଇଙ୍ଗିତରେ ସାରା ବିଶ୍ୱ ଚାଳିତ ହେଉଛି, ଯାହାଙ୍କ କୃପାରେ ସମସ୍ତ ଆତଜାତ, ଯାହାଙ୍କୁ ପାଇବା ଲାଗି ମୁନି ଋଷି ମାନେ ପଞ୍ଚଭୂତରେ ଅତ୍ୟାଚାର ସହ୍ୟ କରି ଇନ୍ଦ୍ରିୟମାନଙ୍କୁ ଦମନ କରି ଯୁଗ ବ୍ୟାପୀ ତପସ୍ୟା କରୁଅଛନ୍ତି, ଯାହାଙ୍କର ଚକ୍ଷୁର ପଲକରେ କ୍ଷୁଦ୍ର ତର୍କାଶୃଙ୍ଖଳନାରେ ସୃଷ୍ଟି ସ୍ଥିତିଲୟ ହେଉଅଛି; ଯାହାଙ୍କ କୃପାରୁ ତୁମ୍ଭର ମହାରଜା, ତୁମ୍ଭେମାନେ ଓ ମୁଁ ଏ ଜଗତକୁ ଆସିଥାଇଁ ଓ ନିକଟରେ ଅଭିନୟ ସାରି ବିଦାୟ ନେବା ସେହି ବିଶ୍ୱବ୍ୟାପୀ ଚରାଚର କର୍ତ୍ତା ଦୟାମୟ ହରିଙ୍କ ନିକଟରେ ତୁମ୍ଭ ରଜା କଣ୍ଠାଣୁ ଠାରୁ କ୍ଷୁଦ୍ର ଓ ତୁଚ୍ଛ । ଦେଖ ଭାଇମାନେ । ସେହି ଦୟାମୟ ଶ୍ରୀ ମଧୁସୂଦନଙ୍କ କୃପା ବ୍ୟତୀତ ମାନଙ୍କର ମୁକ୍ତି ନାହିଁ । ।

୧ମ ଘା ।—କୁମାର ! ଅମ୍ଭେମାନେତ ଆମର ରଜା ଛଡା ଆଉ କିଛି ଜାଣି ନଥିଲୁ, ତୁମଠାରୁ ସବୁଶୁଣି ଆମର ଭ୍ରମ ଘୁଞ୍ଚିଛି । ଅଉ

ଏଣିକି ନରହତ୍ୟା କରିବୁ ନାହିଁ, ତୁମେ କେଉଁଆଡେ ଯିବ ଯାଅ, ଆଜ ଆମେ ଏକାମ କରିବୁ ନାହିଁ, କୁମାର ସାହେବ, ଆମ୍ଭେମାନେ କପରି ମୁକ୍ତି ପାଇବୁ ।

ଅମର—ଭାଇ । ତୁମ୍ଭେମାନେ ଏ ନୃଶଂସ କାର୍ଯ୍ୟ ଛାଡ଼ ଶ୍ରୀ ହରିଙ୍କର ପାଦ ପଦ୍ମ ଧ୍ୟାନ କର—ସମସ୍ତ ପାପ କ୍ଷୟ ହୋଇଯିବ ।

୨ୟ ଘା ।—ଅରେ ଭାଇ । ଅଯ, ଆମେ ଏସବୁ ଆଜ ଏଣିକି କରିବା ନାହିଁ । ବର୍ତ୍ତମାନ କପରି ରାଜାଙ୍କଠାରୁ ଉଦ୍ଧାର ପାଇବା ତା ଉପାୟ କରିବା । ଗୃହ ଗୋଟାଏ ଚଢେଇ ମାରି ତାର ରକ୍ତ ନେଇ ରାଜାଙ୍କୁ ଦେଖାଇବା ।

୧ମ ଘା । —ଯା ଭାଇ । ତୁକଣ କରିବୁ କର, ମୁଁ ଆଉ ସେପରି କାର୍ଯ୍ୟ କରିବ ନାହିଁ ।

୨ୟ ଘା । —ଅଛା ଅ ମୁଁ ମାରିବ କୁମାର ସାହେବ ବର୍ତ୍ତମାନ ତୁମ୍ଭେ ଘରକୁ ନଯାଇଁ ମାମୁ ଘରକୁ ଗୃହଯାଅ, କଛଦିନ ପରେ ରାଜାଙ୍କର କ୍ରୋଧ ଉଣା ହେଲେ ନଅରକୁ ଫେରି ଆସିବେ । ଅମ୍ଭମାନଙ୍କର ଦୋଷ ମାଫ କରନ୍ତୁ । (ପ୍ରମାଣକର ପ୍ରସ୍ଥାନ)

ଅମର — ଏମାନେତ ମତେ ପରିତ୍ୟାଗ କରି ଗୃହଗଲେ, ମୁଁ ବର୍ତ୍ତମାନ କଣ କରିବ, ମାତୁଳାଳୟକୁ ଗଲେତ ପିତା ନିଶ୍ଚୟ ଜାଣି ପାରିବେ, ତାହାହେଲେ ବିନା ଦୋଷରେ ଏହି ଦୁଇଟି ଗରିବଙ୍କର ସର୍ବ ନାଶହେବ । — ନା, ଏହି ଅରଣ୍ୟର ଫଳ ମୂଳରେ ଜୀବନ ଧାରଣ କରି ଶ୍ରୀ ହରିଙ୍କ ନାମ କୀର୍ତ୍ତନ କରି ଧନ ସାଧନ କରିବ । ତା ପରେ ଭଗବାନଙ୍କର ଯାହା ଇଚ୍ଛା ଥିବ ତାହା ପୂରଣ ହେବ ।

(ଗୀତ)

ଅରୂପେ ରୂପ ଦେଖାଇଲ,          ନାଃଶରେ ବାଣୀ ବଜାଇଲ
ମମତପତ ମରୁ ପ୍ରାନ୍ତରେ ।
ତୃଷିତ ପରାଣେ ବରଷା ବାରି ବୁହାଇଲ,
(ଅଜ) କଳଅଇ ପ୍ରୀତ ମନ୍ତ୍ରେ ।
ସେହି ରୂପେ ମଜ, ବାଣୀସ୍ୱରେ ହଜ, ଧାଇଁଲି ଉଲଟେ ସବକର୍ମ ତେଜ ।
(କାହ୍ନ) କରୂପେ ସେ ରୂପ ଦେଖିବ,   କ କଲେ ସେ ବାଣୀ  ଶୁଣିବ
ମନ ନଭୃତ ସୌଧ ଅନ୍ତରେ ।

——o——          (ଗୀତାନ୍ତେ ପ୍ରସ୍ଥାନ)

ନବମ ଦୃଶ୍ୟ—କକ୍ଷ

(ରାଣୀ ମୂଣିଳା ସୁନ୍ଦରୀ ପ୍ରବେଶ)

ରାଣୀ — ଅଜ କ ସୁଖର  ଦନ, ବହୁ କାଳରୁ ମୋର ପୋଷିତ ବାଞ୍ଛା ପୂର୍ଣ୍ଣ ହୋଇଛ, ଅଜସ୍ତୃ ହେବ ରାଜା ମୁଁ  ହେବ ରାଜ ମାତା ଆଜ ମୋର ମନ ଶ୍ରେର  ହେବେ ମୋର  ମନ୍ତ୍ରଣାଦାତା, ପ୍ରଧାନ ଅନ୍ତରାଯୃତ ଦୂର ହୋଇଛ, ଅଜ ଗୋଟିଏ କଣ୍ଟକ ରାଜା ! ସେତ ନଜ ହାତର କଥା ; ଯେତେବେଳେ ଇଛା ସେ କଣ୍ଟକ ଉଦ୍ଧାର କରି ପାରବ ; ଅଜସ୍ତୃ ମୋର  ପ୍ରାଯ୍ୟ ତନମାଧ ହେଲା ପଲାସି ବଦ୍ୟାଳୟକୁ  ପଢିବାକୁ  ଯାଇଛ । ସେ ଅଜ ଅାସିବାର କଥା, କାହିଁ ଏତେ ବେଳଯାଏତ ଦେଖା ନାହିଁ  ।

( ପରଗୃଚାରିକାର ପ୍ରବେଶ ଓ ପ୍ରଣାମ)

ପରଗୃଚାରିକା — ମହାରାଣୀ ! କୁମାରଙ୍କର ଗାଡ ଅସିଲଣି ।

ରାଣୀ — ଯାଅ ତାଙ୍କୁ ମୋ ନକଟକୁ ଶୀଘ୍ର ଘେନିଅସ ।

ପରଗୃଚାରିକା — ଯେ ଆଜ୍ଞା ।                  (ପରଗୃଚାରିକାର ପ୍ରସ୍ଥାନ)

ରାଣୀ – ଅମରର କଥା ଶୁଣିଲେ ଅଜୟ୍ତ—ଅସ୍ଥିର ହୋଇ ପଡ଼ିବ)
କପର ତାକୁ ଏ ସମ୍ବାଦ ଦେବ, ଦେଖେ—
(ଅଜୟ ସିଂହଙ୍କର ପ୍ରବେଶ ଓ ରାଣୀଙ୍କୁ ନମସ୍କାର)

ରାଣୀ – (ଉଠାଇ ନେଇ ଚୁମ୍ବନ କରି) ଦୀର୍ଘଜୀବି ହୁଅ ବତ୍ସ ।

ଅଜୟ – ମା ! ପୂଜ୍ୟପାଦ ପିତା ଓ ନନା କୁଶଳରେ ଅଛନ୍ତି ତ ?

ରାଣୀ – ହଁ ବାପ ସମସ୍ତେ ଭଲ ଅଛନ୍ତି, ତୋ ବିନା ଗୃହଅାଡେ ଅନ୍ଧାର ଦେଖୁଥିଲୁ; ବର୍ତ୍ତମାନ ତୋତେ ଦେଖି ମୋ ପିଣ୍ଡରେ ପ୍ରାଣ ପଶିଲା, ମୁଁ ଆଉ ତୋତେ ଛାଡ଼ିବି ନାହିଁ; କି ପାଠ ପଢୁଛୁ ବାପ ?

ଅଜୟ—ମା ! ବର୍ତ୍ତମାନ ରାଜନୀତି ଶିକ୍ଷା କରୁଛି । ନନାଙ୍କର ରାଜନୀତିରେ ଖୁବ ଗବେଷଣା ଅଛି । ତାଙ୍କୁ ଗୁରୁ ମହାଶୟ ବିଶେଷ ପ୍ରଶଂସା କରନ୍ତି, ଅନେକ ସମୟରେ କହନ୍ତି ନନାଙ୍କ ସଦୃଶ ରାଜନୀତିଜ୍ଞ ଅନ୍ୟ କେହି ହୋଇ ପାରିବେ ନାହିଁ ।

ରାଣୀ—ନନାଙ୍କ କଥା ଛାଡ଼ିଦେ, ତାଙ୍କର ଶେଷ ହେଲଣି, ଏବେ ତୋର କେବେ ସରୁଛି ?

ଅଜୟ—ମା ! ବିଦ୍ୟାର ଶେଷନାହିଁ, ଶାସ୍ତ୍ର ଅପାର ଓ ଅନନ୍ତ ମନୁଷ୍ୟର ଆୟୁ ଅତି ଅଳ୍ପ, ଜନ୍ମଜନ୍ମାନ୍ତର ପଢିଲେ ମଧ୍ୟ ବିଦ୍ୟାର ଚରମସୀମାରେ କେହି ପହଞ୍ଚି ପାରେନାହିଁ, ବିଦ୍ୟାକଥା କଣ ପଚାରୁଛନ୍ତି ମା ?

ରାଣୀ—ନା ବାପ ! ମୁଁ ସେକଥା ପଚାରୁ ନାହିଁ, ମୋର ପଚାରିବାର ଉଦ୍ଦେଶ୍ୟ ଏହି ଯାହା ପଢିଲୁଣି ସେଥିରେ ରାଜ୍ୟ ଭଲରୂପେ ଚଳାଇ ପାରିବୁତ ?

ଅଜୟ—ରାଜ୍ୟରେ ମୋର କଣ ଅଛି, ସେ ଭାର ନନାଙ୍କ ଉପରେ ସେତ ରାଜନୀତିରେ ପ୍ରତିଷ୍ଠା ଲାଭ କରିଅଛନ୍ତି ।

ରାଣୀ—କାଳସ୍ରୋତରେ କେତେବେଳେ କଣ ହୋଇ ଯାଉଛି;
ତାର କଣ ଇୟତ୍ତା ଅଛି ? ଭଲ ମନ୍ଦତ ଲଗିଛି, ସବୁଦିନ
କାହାର ସମାନ ଯାଏନାହିଁ । ଆଜି ଯେ ନିଜର ଗୁଣରେ
ଭୁବନ ବିଦିତ ଓ ଲୋକ ପ୍ରତିଷ୍ଠ, କାଲି ସେ ନିଜର ପ୍ରକୃତି
ଦୋଷରୁ ଘୃଣ୍ୟ ଓ ସମାଜଚ୍ୟୁତ, ସେଥିପାଇଁ କାହାର ଉପରେ
ନିର୍ଭର ରଖାଯାଇ ନପାରେ, ଯଦି କାଳ ଗତିରେ ତୁମ୍ଭ
ଉପରେ ରାଜ୍ୟଭାର ପଡ଼େ ତାହାହେଲେ ତୁମ୍ଭଙ୍କୁ ଶାସନ କରି
ବାକୁ ପଡ଼ିବ ।

ଅଜୟ—ମାଁ ! ଏପରି ପାପଚିନ୍ତା କରୁଛନ୍ତି କାହିଁକି ? ଆପଣ ଜାଣନ୍ତି
ନାହିଁ ନନାସାହେବ କି ଉଦାର ଓ କି ମହତ୍, ସେ ମୋତେ
ତାଙ୍କର ପ୍ରାଣଠାରୁ ଅଧିକ ଭଲ ପାନ୍ତି, ସେ ମୋ ସୁଖରେ
ସୁଖୀ ଓ ମୋ ଦୁଃଖରେ ଦୁଃଖୀ, ଏବଂ ସଦାବେଳେ ମୋର
ମଙ୍ଗଳ କାମନା କରନ୍ତି, ଅଧିକ କଣ କହିବି ମା ! ମୋ
ସକାଶେ ନିଜର ଜୀବନ ମଧ୍ୟ ଦେଇପାରନ୍ତି, ଏପରି ଦେବୋ-
ପମ ଭ୍ରାତା ପାଇବା କି କମ ସୌଭାଗ୍ୟର ବିଷୟ ! ଆଶୀର୍ବାଦ
କରମା ଯେପରି ନନାଙ୍କର କୌଣସି ଅନିଷ୍ଟ ନହୁଏ । ଏବଂ
ଯେପରି ସେ ଦୀର୍ଘାୟୁ ଓ ଯଶସ୍ୱୀ ହୁଅନ୍ତି । ମା, ମୁଁ ନନାଙ୍କୁ ଓ
ପିତାଙ୍କୁ ଅଭିବାଦନ କରି ଆସେ ।

ରାଣୀ—ରହ ବାପ, ଭୋଜନ କରିଯିବୁ ।

ଅଜୟ—ନନାଙ୍କୁ ଡାକି ଆଣି ଏକା ସାଙ୍ଗରେ ଭୋଜନ କରିବୁ,
ଅନେକ ଦିନ ହେଲା ମୁଁ ତାଙ୍କ ସଙ୍ଗରେ ଖାଇନାହିଁ ।

ରାଣୀ—ବାପ ! ତୋର ଭାଇ ରାଜଭବନରେ ନାହାନ୍ତି ।

ଅଜୟ—ତେବେ କଣ ମୃଗୟା କରିବାକୁ ଯାଇଛନ୍ତି ?

ରାଣୀ—(କୃତ୍ରିମ କ୍ରନ୍ଦନ କରି) ବାପ ! ସେ ଆଉ ଇହଧାମରେ ନାହାନ୍ତି ।

ଅଜୟ—କଣ କହୁଛ ମା ! ଏକଣ ସତ୍ୟ ? (କାନ୍ଦିବା)

ରାଣୀ—ଧୈର୍ଯ୍ୟଧର ବାପ, କ୍ରନ୍ଦନରେ ଫଳନାହିଁ, ଯାହା ହେବାର ଥାଏ ତାହା ହୋଇଯାଏ ବିଧିର ବିଧାନ କେହି ଲଙ୍ଘନ କରି-ପାରେ ନାହିଁ ।

ଅଜୟ—ନନାଙ୍କର କଣ ହୋଇଥିଲା ମା ! କପରି ତାଙ୍କର ଏଦୁର୍ଦ୍ଦଶା ଘଟିଲା ?

ରାଣୀ—ସେ ଅତିଗର୍ହିତ କାର୍ଯ୍ୟ କରିବାରୁ ରାଜା-ତାହାଙ୍କୁ ପ୍ରାଣଦଣ୍ଡ ଦେଇଅଛନ୍ତି ।

ଅଜୟ—ନନାଙ୍କର ଗର୍ହିତ କାର୍ଯ୍ୟ ? ଅସମ୍ଭବ । ପିତାଙ୍କର ବୋଧହୁଏ କିଛି ଭ୍ରମ ହୋଇଅଛି ।

ରାଣୀ—ରାଜାସନରେ ବସି ପକ୍ଷପାତ ବିଚାର କଲେ ରାଜମଣ୍ଡଳରେ ବ୍ୟାଘାତ ଘଟିବ ତେଣୁ ରାମଚନ୍ଦ୍ର ନିଜର ସ୍ତ୍ରୀଙ୍କୁ ବାଧହୋଇ ବନବାସ ଦେଇଥିଲେ । ନଳ, ଶିବି ଯୁଧିଷ୍ଠିରାଦି ପୁଣ୍ୟାତ୍ମା ମାନେ ରାଜଧର୍ମ ରକ୍ଷା ନିମନ୍ତେ ଦୁଃସହ ବିପଦାର୍ଣ୍ଣବକୁ ହାସ୍ୟ ମୁଖରେ ଲମ୍ଫଦେଇଥିଲେ । ପିତାଙ୍କର ବା ଦୋଷକଣ । ସେ ଯଦି ନ୍ୟାୟବିଚାର କରିନଥାନ୍ତେ ତେବେ ରାଜଗାଦିରେ କଳଙ୍କ ଲାଗିଥାନ୍ତା । ପ୍ରଜାମାନେ ରାଜାଙ୍କୁ ଆଉ ବିଶ୍ୱାସ କରନ୍ତେ ନାହିଁ ।

ଅଜୟ—ନନା ଏପରି କି ମହାପାପ କରିଥିଲେ ଯେ, ତାଙ୍କୁ ପ୍ରାଣଦଣ୍ଡ ଦିଆଗଲା ।

ରାଣୀ—ଗତ ବାପ ! ସେଥିରୁ ତୁ କଣ ପାଇବୁ, ସେସବୁ ପଚାରି ବୁଝିବୁ । ବର୍ତ୍ତମାନ ଖାଇବୁ ଚାଲ ।

ଅଜୟ—ଆପଣ ବଡ଼ ନଷ୍ଟ ସ୍ତ୍ରୀ । ନୋହିଲେ ନିଜାଙ୍କପରି ପୁରୁଷଙ୍କୁ ହରାଇ କେଉଁ କାମିନୀ ହୃଦୟଧରି ରହନ୍ତା ? ବୁଝିଛି ସପତ୍ନୀ ଦୋଷ ଜନିତ ହୃଦୟ ଦୌର୍ବଲ୍ୟ ଏହା ।

ରାଣୀ—ବୃଥା ଦୋଷ ଦେଉଛନ୍ତି କାହିଁକି ? ଦିନେ ରାଜ ଉଦ୍ୟାନରେ ମତେ ଏକାକୀ ଦେଖି 'ପ୍ରାଣେଶ୍ୱରୀ' ବୋଲି ସମ୍ବୋଧନ କରିବାରୁ ରାଜା ଏପରି ଆଦେଶ ଦେଇଅଛନ୍ତି ।

ଅଜୟ—ଏହା କି ସତ୍ୟ ? ନା କଦାପି ନୁହେଁ, ଯଦି ଇନ୍ଦ୍ରଦେବ ଐରାବତ ପୃଷ୍ଠରୁ ଚକ୍ରନିର୍ଘୋଷରେ କହନ୍ତି 'ଏହାସତ୍ୟ' ସ୍ୱୟଂ ଭଗବାନ ରୁଦ୍ର କୈଳାସ ଶିଖରରୁ କହନ୍ତି 'ଏହାସତ୍ୟ' ଜଗନ୍ନାଥ ଭୈରବୀମୂର୍ତ୍ତି ଧାରଣ କରି କହନ୍ତି 'ଏହାସତ୍ୟ' ଯଦି ଚନ୍ଦ୍ର ସୂର୍ଯ୍ୟ ଗ୍ରହ ନକ୍ଷତ୍ର ଗଣ ଏକତ୍ର ଅବସ୍ଥାନ କରି କହନ୍ତି 'ଏହାସତ୍ୟ' ତଥାପି ମୋର ଅନ୍ତରାତ୍ମାରୁ ଯେପରି କେହି କହି ଦେଉଛି, ନା; ଏହା କଦାପି ନୁହେଁ । ହୃଦୟ ଏକଥା ଶୁଣିବା ପୂର୍ବରୁ ବିଦୀର୍ଣ୍ଣ ନହୋଇ ରହିଲୁ କିପରି ? ଶରୀର ତୁ ପଞ୍ଚଭୂତରେ ମିଶି ନଯାଇ ରହିଛୁ କିପରି ? ନନା, ନନା, ତୁମ୍ଭେ ଏତେ ନିର୍ଦ୍ଦୟ ! ତୁମ୍ଭର ଅତି ଯତ୍ନ ପାଳିତ ଜ୍ୟେଷ୍ଠ ଭାଇକୁ ଛାଡ଼ି କେଉଁଠି ଅତେ ଚାଲିଗଲ ? କ୍ଷଣେ ହେଲେ ଅପେକ୍ଷା କଲନାହିଁ ? ତରବାରୀ, ତୁ ମୋର ସହାୟ ହୁଅ ମୋତେ ମୋର ଭାଇଙ୍କ ନିକଟରେ ପହଞ୍ଚାଇଦେ, ସେଠି ଆନନ୍ଦ ଧାମରେ ଦୁଇଭାଇ ଆନନ୍ଦରେ ବିଚରଣ କରିବୁ । ସେଠାରେ ଆଉ ବିଚ୍ଛେଦ ଦୁଃଖ ସୁଖ ରହିବନାହିଁ ।

(ତରବାରି ଆପଣା ବକ୍ଷରେ ମାରିବାକୁ ଯିବାକାଳେ)

(ସହସା ରଜାଙ୍କର ପ୍ରବେଶ)

ରଜା—(ହାତଧରି) ଅଜୟ୍! ଅଜୟ୍! ଏ କଣ କରୁଛୁ ? ଶାନ୍ତହୁଅ ।

—ଃ✱୦✱ଃ—

ଡ୍ରପ୍ ।

==ଃ୦ଃ==

## ତୃତୀୟ ଅଂକ ।

ପ୍ରଥମ ଦୃଶ୍ୟ—କକ୍ଷ୍ୟ

(ଗୁଣଧର ଅଚଳସିଂହଙ୍କର ପ୍ରବେଶ)

ଗୁଣଧର—କାହିଁ, ଏତେବେଳ ପର୍ଯ୍ୟନ୍ତ ଆସିଲେ ନାହିଁ ? ରାତି ଆସି ଅଧିକ ଉପରେ ହେଲାଣି, ଅନାଇ ଅନାଇ ଆଖିରୁ ପାଣି ମଲାଣି । କାହାରିତ ଦେଖାନାହିଁ (ନେପଥ୍ୟକୁ ଚାହିଁ) ଏଇ ଆସୁଛନ୍ତି ପରା ? (ରାଣୀଙ୍କର ପ୍ରବେଶ) ଆଜ ଏତେ ଡେରି ଦେଖି ଭାବୁଥିଲି ଗରିବକୁ ଭୁଲିଗଲ ।

ରାଣୀ—(ସବିନୟେ) କଣ କରିବି, ଆଜ ସବୁଦିନଠୁଁ ବେଶି ଡେରି ହୋଇଗଲା; ଅମରର ମୃତ୍ୟୁଦିନୁଁ ରଜାଙ୍କର ଆହାର ଓ ନିଦ୍ରା ନାହିଁ । ସେ କେବଳ ବିଛଣାରେ ପଡି ଛଟପଟ ହେଉଥାନ୍ତି । ସେ ଶୋଇ ନପଡ଼ିଲେ ବା ମୁଁ କିପରି ଆସିବି ?

ଗୁଣଧର—ଏ ଦାସକୁ ମନେ ରଖିଥିଲେ ହେଲା ।

ରାଣୀ—କଣ କହୁଛ, ତୁମ୍ଭଙ୍କୁ ଭୁଲିବି ? ନିଜକୁ ଭୁଲି ଯାଇପାରେ ରାଜପୁତ୍ରଙ୍କୁ ଭୁଲିଯାଇ ପାରେ କିନ୍ତୁ ତୁମ୍ଭଙ୍କୁ ଭୁଲି ପାରିବନାହିଁ । ତୁମ୍ଭ ସାଙ୍ଗରେ ଥିଲେ ଭିକ୍ଷା ଏ ଅବଳା ରାଜଶ୍ରୀ ଅପେକ୍ଷା ମୋର ଅଧିକ ସୁଖଦାୟିନୀ ନୁହେଁ ।

ସୁଣ — ଯଦି ପ୍ରକୃତ ସ୍ନେହଥାଏ ମୋଠାରେ, ତେବେ ଉପାୟ କରି ରାଜାଙ୍କୁ ଶେଷକରି ଦେଲେତ ସବୁ ଅତୁ ଭଲ ହୁଅନ୍ତା ।

ରାଣୀ — ତାହା ମୁଁ ଅନେକ ଦିନରୁ ଭାବୁଛି; କିନ୍ତୁ କିଛି କିନାରା ପାଉ-ନାହିଁ; ତୁମ୍ଭ ବୁଦ୍ଧିବଳେ କଣ ହୋଇ ନପାରେ; ତୁମ୍ଭେ ପରେ ଭାବି ଠିକ୍ କରି ମତେ କହିବ, ମୁଁ ବର୍ତ୍ତମାନ ଯାଉଛି; ରାତି ଅପି ଶେଷ ପ୍ରାୟ ହେଲଣି । (ରାଣୀଙ୍କର ପ୍ରସ୍ଥାନ)

ସୁଣଧର — କି ସୁଯୋଗ ! ଏଥର ଦେଖିବ ବିଜୟସିଂହ ତୋର କେତେ ଦୂର ଆସ୍ପର୍ଦ୍ଧା । ଯେଉଁଦିନ ବିନା ଦୋଷରେ ମୋର ଧନରତ୍ନ ଅପହରଣ କରି ମୋତେ ପଦ ଚ୍ୟୁତ ଓ ନିର୍ବାସିତ କଲୁ ସେ ଦିନ ମନେ ପଡେ; ଯେଉଁଦିନ ସ୍ତ୍ରୀ ପୁତ୍ର କନ୍ୟା ସହିତ ବାସ ସ୍ଥାନହୋଇ ବନେ, ଅରଣ୍ୟେ, ଗ୍ରାମେ, ପ୍ରାନ୍ତରେ, ଅଶ୍ରୁ ଢାଳୁଥିଲି ସେଦିନ ମନେପଡେ; ଯେଉଁଦିନ କ୍ଷୁଧାତୁର ଶିଶୁ ପୁତ୍ରର ପ୍ରାଣରକ୍ଷାର୍ଥେ ହାଅନ୍ନ, ହାଅନ୍ନ, କହି ଦ୍ୱାରେ୨ କାତର କଣ୍ଠରେ ଭିକ୍ଷା କରୁଥିଲି, ସେଦିନ ମନେ ପଡେ । ସେ ସମସ୍ତ ଦୁଃଖର ପ୍ରତିଶୋଧ ନେବାର ସମୟ ଆସିଛି, ପୁତ୍ର କନ୍ୟାର ବିରହ ଜନିତ ଦୁର୍ବିସହଶୋକ ପ୍ରତିହିଂସାନଳରେ ଆହୁତି ଦେବି ! ହୃଦୟ ସ୍ଥିର ହୁଅ ।

— * —　　　　　　(ପ୍ରସ୍ଥାନ)

ଦ୍ୱିତୀୟ ଦୃଶ୍ୟ — ଉଦ୍ୟାନସ୍ଥ ସରୋବର ପାର୍ଶ୍ୱ ।

( ଅଜୟସିଂହ ଉପବେଷନ )

ଗୀତ

ମମ ମୁକୁଳିତ ପ୍ରାଣେ ଫୁଟିଥିଲା
କେତେ ନବୀନ କୁସୁମ　　　　ନବୀନ ଉଷାର ସଙ୍ଗେ

ଧବଘର ଟେସ୍ ମଧ୍ୟେ ଅଛି ମାତ୍ର
ଝାଉଁଳାଇ ଦେଲା ପଡ଼ିଲା ଯେ ଛତ;
କଠିନ ଶିଳାର ଅଙ୍ଗେ
ସେହି ଶିଳାତଳେ ପୁଷ୍କରିଣୀ ଜଳ ସେହି ମୁହିଁ
ସେହି ଶଶି ତାରା ଦଳ
ପଡ଼ିଅଛି ସ୍ମୃତି ନାହିଁ ପରାଣନ୍ତି ନାହିଁ ସେହି
ମୂଳ ସ୍ନେହ ଗ୍ରହିଁ ହାଣିକି, ଯାଏ ଯାହା ଗୃହ ଫେରିବ ଆସେସେ
ନୀଳ ମହାସିନ୍ଧୁ ପ୍ରତିକୂଳ ସ୍ରୋତୁଁ ଓଠାରିଲେ ସ୍ମୃତି ମଙ୍ଗେ

—୦—

ଅହା ! ଅଜ ତରୁଣ ତପନର ଅରୁଣ କିରଣ କରସ୍ପର୍ଶରେ ଲଜ୍ଜ୍ୟାନତା ଧରଣୀର ମୁଖ ଈଷତ ରକ୍ତାଭ ହୋଇଅଛି, ଗନ୍ଧବହ ମନ୍ଦେ ୨ ବହି ଜଗତ ପ୍ରାଣ ଅକୁଳ କରୁଅଛି, ପ୍ରସ୍ଫୁଟିତ କୁସୁମ ସୌରଭ ମତ୍ତଅଳି କୁଳ ଗୁଣୁ ୨ ସ୍ୱନରେ ଫୁଲୁ ଫୁଲକୁ ଉଡ଼ି ବୁଲୁଛନ୍ତି । ଭଗତ ଯାମିନୀର ଦୁଃଖ ଭୁଲି ଯାଇଁ କମଳିନୀ ପୁଲକ ପ୍ରାଣେ ପ୍ରାଣ ପତିର ବନ୍ଦନା କରୁଛି । ରାତ୍ରି ଅବସାନରେ ବିହଙ୍ଗମଗଣ ନିଜ ୨ ବାସ ଛାଡ଼ି ଖାଦ୍ୟ ଅନ୍ୱେଷଣରେ ବାହାରୁ ଅଛନ୍ତି । ଚରାଚର ସମସ୍ତେ ନବ ପ୍ରାଣପାଇଁ ଜାଗି ଉଠିଲେଣି; କିନ୍ତୁ ଏ ସନ୍ତପ୍ତ ପ୍ରାଣର ପରିବର୍ତ୍ତନ ନାହିଁ ଏ ଦୁଃଖୀ ଦୁଃଖର ଅବସାନ ନାହିଁ, ଏହି ଶିଳା ପରି ଦୁଇଭାଇ ଏକତ୍ରରେ ବସି ଉଦ୍ୟାନ ଶୋଭା ଦର୍ଶନରେ ଯେ ଅନନ୍ଦ ଲଭ କରୁଥିଲୁଁ ତାହା ଅଜ ନାହିଁ । ସେହି ଶିଳା ସେହି ଉଦ୍ୟାନ ଓ ସେହିପୁଷ୍କରଣୀ ଅଛି; କିନ୍ତୁ ସେ ଦିନ ନାହିଁ । ଈଶ୍ୱର ! ତୁମ୍ଭର କି ବିଚିତ୍ର ଲୀଳା, ଦିନେ ଯେଉଁ ସବୁ ବସ୍ତୁ ଦର୍ଶନରେ ମନ ପୁଲକିତ ଓ ଶରୀର ରୋମାଞ୍ଚିତ ହେଉଥିଲା, ଅଜ ତାହା ପୂର୍ବସ୍ମୃତି ଅଣିଦେଇ ମନ କ୍ଷୁବ୍ଧ ଓ ଶରୀର ଅବସନ୍ନ କରି ପକାଉଛି ।

(ପରିଚାରିକାର ପ୍ରବେଶ ଓ ପ୍ରଣାମ)

ପରିଚାରିକା — ଯୁବରାଜ ସାହେବ ! ରାଣୀମା ଡାକୁଅଛନ୍ତି ।

ଅଜୟ — ଚାଲ ମୁଁ ଯାଉଛି ।

ପରିଚାରିକା — କାଲି ରାତିରେ ଉପବାସ ଥିଲବୋଇ ମା ଖାଇବା ପ୍ରସ୍ତୁତ କରି ଅପେକ୍ଷାରେ ବସିଛନ୍ତି ।

ଅଜୟ — ଆଚ୍ଛା ତେବେ ଚାଲ । (ଉଭୟଙ୍କର ପ୍ରସ୍ଥାନ)

— ○ —

ପଞ୍ଚମ ଦୃଶ୍ୟ — ବନପଥ

(ରୋହଣୀର ବାଳକ ବେଶେ ପ୍ରବେଶ)

"ଗୀତ"

ମମ ଭବ ବହୁଳା କଳ୍ପନା
ତାନେ ମାନେ ଗାନେ ଇନ୍ଦ୍ରଜାଲ ବରଣା ! • ।
ଅଜ ଫୁଲେ ଫୁଲେ ଫୁଟି ମାତୁଛି, ଚପଳା ଚମକ ଛନ୍ଦେ
ଦୂର ନୀଳ ମେଘ କୋଳେ ଦଗ ଦଗନ୍ତେ
ପ୍ରଭାତେ ନିଶିଥେ ବରଷା ଶୀତେ
ଅକୂଳ ଅବେଗେ ଉଚ୍ଛୁଳି ୨,-ସରମ ମରମ ବେଦନା (ହରେ) । ୧ ।
କବା ଜାଗରଣେ କବା ସ୍ୱପନେ
ନଭ ଚନ୍ଦ୍ର ତାରକା ତପନେ
ବନେ କାନନେ ତୁହିନେ ସଲିଳେ; ବିଶ୍ୱଭବ ରାଜ୍ୟ ନିଖିଳେ
ବହାଇ ମତାଇ ଭସାଇ ଫୁଟାଇ
ପ୍ରୀତି ବିଭେଦ କରୁଣା । ୨ ।

• • • ○ • • •

ରୋହଣୀ — କି ହତଭାଗ୍ୟ ଜନ୍ମ ପାଇଥିଲି ଯେ ଯୌବନ ପ୍ରାରମ୍ଭରେ ପିତୃହୀନ ହେଲି । ପଡ଼ବଧୁର ଜନନୀ କେବଳ ମୋର

ଅଗ୍ରାରେ ପତି ଶୋକକୁ ହୃଦୟରେ ସଂଗୋପନ କରି ରାଜ୍ୟର ସମସ୍ତ କାର୍ଯ୍ୟ ଚଳାଉ ଥିଲେ; ଅମରସିଂହଙ୍କ ସଙ୍ଗେ ବିବାହ ହେବେ ବୋଲି କେତେ ଆନନ୍ଦ ପ୍ରକାଶ କରୁଥିଲେ । କିନ୍ତୁ ନିଷ୍ଠୁର ବିଧି ସେ ସୁଖରେ ମଧ୍ୟ ବାଧା ଘଟାଇଲା, ଶୋକାତୁରା ଜନନୀ ଅମରଙ୍କର ମୃତ୍ୟୁ ସମ୍ବାଦ ଶୁଣି ଅନ୍ୟତ୍ର ବିବାହର ଆୟୋଜନ କରୁଥିଲେ ମାତ୍ର ମୁଁ ତାଙ୍କର ସେ ସୁଖରେ ବାଧାଦେଇ ସାହାପୁର ରାଜଭବନରୁ ଏହି ଛଦ୍ମବେଶ ଧାରଣ କରି ପଳାଇ ଆସି ଦେଶ ଦେଶାନ୍ତରେ ବୁଲୁଛି । ମୋର ବା ଦୋଷ କଣ ? ସ୍ତ୍ରୀ ଜାତିତ ପ୍ରସ୍ଫୁଟିତ କୁସୁମ ତୁଲ୍ୟ, ଗୋଟିଏ ଫୁଲରେତ ଆଉ ପାଞ୍ଚଗୋଟି ଦେବତା ପୂଜା ହୁଏ ନାହିଁ, ଯେତେବେଳେ ଅମରଙ୍କୁ ମନ୍‌ପ୍ରାଣ ସମର୍ପଣ କରିଦେଇଛି ତେତେବେଳେ ଅନ୍ୟଜଣଙ୍କୁ କିପରି ପତିରୂପରେ ବରଣ କରିବି ! ମୋର ବିଚ୍ଛେଦରେ ଜନନୀ ଗୃହଆଡେ ଲୋକ ପଠାଇ ହତାଶ ହୋଇ ଯିବେଣି; ଫେରିଯାଇ ତାଙ୍କର ଶୋକସନ୍ତପ୍ତ ହୃଦୟକୁ ଶୀତଳ କରନ୍ତି କିନ୍ତୁ ତାହାହେଲେତ ମୋର ଧର୍ମରେ ବାଧାଘଟିବ । ମୋର ନିଜକାର୍ଯ୍ୟ ହୋଇଥିଲେ ଦୁଃଖ ନଥିଲା ମାତ୍ର ଏହା ସ୍ୱାମୀର କାର୍ଯ୍ୟ ସ୍ୱାମୀ ସ୍ତ୍ରୀର ଆରାଧ୍ୟ ଦେବତା ଏକମାତ୍ର ପୂଜାର ପାତ୍ର । ଯାଏ ଯଦି ଏହି ଜଗତରେ କେଉଁଠାରେ ଶାନ୍ତିପାଏ ତାହାହେଲେ ଜୀବନର ଅବଶିଷ୍ଟାଂଶ ଇଶ୍ବରଙ୍କ ସେବାରେ କଟାଇବି ।

...o...

ଚତୁର୍ଥ ଦୃଶ୍ୟ—ଗ୍ରାମ ଉପକଣ୍ଠ ।

( ଗ୍ରୈବ ଦସ୍ୟୁଙ୍କର ପ୍ରବେଶ )

"ଗୀତ"

ପାଗ ଯୋଗଦେଖି ବିଲକୁ ଚଷରେ ହଳିଆ ଭାଇ,
ଥରେ ହୁଡ଼ିଗଲେ ବରଷ ଯାକରେ ବସିବୁ ତୁହ୍ନି । • ।
ବାଳୁଙ୍ଗା ବିଆଳ ବାଛଣ ରଖ
ନୋହିଲେ ପାଇବୁ ଅଗାଡ଼ ଶୁଁଙ୍କ
ସବୁ ପରଶ୍ରମ ପଣ୍ଡହୋଇଯିବ ଦଣ୍ଡକ ଅବଗିତ ଭଣ୍ଡିରୁ ଭୁହ୍ନ ।୧।

ପ୍ରଥମ—ଅରେ ସାଙ୍ଗ ! କହିଲୁ ଭଲା କେମିତ ପାଗ ହୋଇଛି ?

ଦ୍ୱିତୀୟ—ଅସଲ ପାଗରେ ଭାଇ, ଏପର ପାଗ କ କଏ କେବେ ଛାଡେ ।

ପ୍ରଥମ—ଆଜ ଗୋଟା ଅଧେଏ ଶିକାର ନ କଲେ ଚଳବ ନାହିଁ ।

ଦ୍ୱିତୀୟ—ଆଉର ଯାମ୍, ଭୁଟା ଖାଲି ଫଳକୁଡ଼ିଆ କୁହାଳଅଟା ଏ, କାମ ପଡ଼ିଲାବେଳକୁ ପୋଖଉଛନ୍ତି ଆ !

ପ୍ରଥମ—ଆରେ ହିଁ ଯା ମଁ ସେଦନ କଣ ଦେଖିନାହୁଁ ସେ ମାଇପି ଟା ଠୁଁ କେମିତ ମଜାରେ ସବୁ ନେଇଆସିଲୁ ।

ଦ୍ୱିତୀୟ—ତୁ କଣ ଅଣିଲୁ ମଁ ? ମୁଁ ତ ସବୁ କଲ ହଗନେଲା ବେଳକୁ ତୁ; ( ଅନାଇ ) ଅରେ ଚୁପ୍ ୨ ଗୋଟାଏ ଆସୁଛି, ହୁରୁଡ ଯିବଟି, ଅ, ଲୁଚଯିବା ।

(ତଥାକରଣ)

(ରୋହଣୀର ପ୍ରବେଶ)

ରୋହଣୀ—ଜଗତଟା କଣ ଏହପର, ଯେଉଁ ଆଡେ ଗଲେ ସେ ଅଡେ ଖାଲି ପର ନନ୍ଦା ପରଚର୍ଚ୍ଚା ଲଗିଛି । ଏସବୁ ଦେଖି ଶୁଣି

ମନୁଷ୍ୟ ପାପମୟ ସଂସାରକୁ ତ୍ୟାଗ କରିପାରୁନାହିଁ ! କି ଅଜ୍ଞାନ୍ତ ।

(ଚୋରଙ୍କର ପୁନଃପ୍ରବେଶ)

ପ୍ରଥମ—ଅହେ ପୁଣ୍ୟବନ୍ତ ପୁରୁଷ, ଯାହାକିଛି ଅଛି ଦିଅ, ନଚେତ୍ (ଛୁରୀ ଦେଖାଇବା)

ଦ୍ୱିତୀୟ—ଡେରି ହେଉଛି ଜଲଦି କାଢ ।

ରୋହିଣୀ—ଭାଇମାନେ ! ମୋର ଯାହା କିଛି ଅଛି ମୁଁ ଅକାତରେ ସମସ୍ତ ଦେଉଛି; ମୋ ଉପରେ ଅତ୍ୟାଚାର କରନାହିଁ ।

ପ୍ରଥମ—ବେଶ୍ ଏଯେ ଠିକ୍ କଥା, ତାହେଲେ ତୁ ଭଲ ଅବେ ବି ଭଲ ।

(ରୋହିଣୀ ସମସ୍ତ ଅଳଙ୍କାର ଦେବା ଚୋରଙ୍କରପ୍ରସ୍ଥାନ)

ରୋହିଣୀ—ସବୁ ଛାଡ଼ି ମଣିକାଞ୍ଚନର ମାୟା ଛାଡ଼ି ପାରି ନଥିବାରୁ ଏତେ-ଦଣ୍ଡ ଥିଲା, ଅର୍ଥ ସବୁ ଅନର୍ଥର ମୂଳ , ଯାହାହେଉ ଈଶ୍ୱର ତହିଁରୁ ମୁକ୍ତକଲେ , ଏବେ ମୋର ଶେଷ ଅଶ୍ରୁଟୁକ ବନସ୍ଥ । ସେଠାରେ ଏକଚିତ୍ତରେ ଏକଧ୍ୟାନରେ ଈଶ୍ୱରଙ୍କୁ ଡାକି ପାରିବ । ( ପ୍ରସ୍ଥାନ )

—o—

ପଞ୍ଚମଦୃଶ୍ୟ--ଆଶ୍ରମ ।

[ ସନ୍ୟାସୀବେଶଧାରୀ ଅମରସିଂହଙ୍କର ଦଣ୍ଡାୟମାନ ]

ଅମର—ଅତତାୟୀ ରକ୍ଷିତ ଧୂର୍ଣ୍ୟଜ୍ଞାବନ ଯେଉଁ କେତେକାଳ ଏହିପରି ଭବରେ ରହିବ , ପିତା ପ୍ରାଣଦଣ୍ଡ ବଧାନକରି ମୋତେ ସଂସାର ଯନ୍ତ୍ରଣାରୁ ଉଦ୍ଧାର କରିବାକୁ ବସିଥିଲେ, ମୁଁ କାପୁରୁଷ ପରି ଜୀବନଲୋଭରେ ପଳାଇଆସି ଦୁଇବର୍ଷ ହେଲା ବନୁବନ

ବୁଲୁଛି । ମନେ କରିଥିଲି ଜୀବନର ଅବଶିଷ୍ଟାଂଶ ଈଶ୍ୱରଙ୍କ ଧ୍ୟାନରେ କଟାଇବି, କିନ୍ତୁ ହୋଇଗଲା ଏତେ ପ୍ରବଳ, ଆକର୍ଷଣ ଗ୍ରନ୍ଥି ଏତେ ଦୃଢ଼ ଯେ ଶତ ଚେଷ୍ଟାରେ ତହିଁରୁ ମୁକ୍ତ ପାଇପାରୁନାହିଁ । ସମୟେ ସମୟେ ସ୍ନେହଲତାର ରୂପମାଧୁରୀ ସ୍ମୃତିପଥରେ ଜାଗି ଉଠି ହୃଦୟ ଗ୍ରାମ ଦହି ପକାଉଛି । ବର୍ତ୍ତମାନ ମୋର ସ୍ନେହଲତା ପାଇବାର ଆଶା ବାମନର ଚନ୍ଦ୍ର ଲଭିବା ପରି, ତଥାପି ଅତୃପ୍ତ ବାସନାର ଉପଶମ ନାହିଁ । ଈଶ୍ୱର ତୁମ୍ଭ ରାଜ୍ୟରେ କି ଏ ଅଧମର ସ୍ଥାନ ନାହିଁ, ଏ ଅନୁତପ୍ତ ପ୍ରାଣର କି ଶାନ୍ତି ନାହିଁ ?

[ଚିନ୍ତାକର ଆଶ୍ରମରେ ବସିବା ଓ ବାଳକ ବେଶଧାରୀ ସ୍ନେହଲତାର ପ୍ରବେଶ । ]

ସ୍ନେହଲତା—କାହାର ଏ ଆଶ୍ରମ, ଏ ଆଶ୍ରମର ଶୋଭାବଲୋକନରେ ଚିତ୍ତ ସ୍ତବ୍ଧ ଓ ଶରୀର ପୁଲକିତ ହେଉଛି, ଏହାର ଦକ୍ଷିଣରେ ସ୍ୱଚ୍ଛସଲିଳା ନିର୍ଝରିଣୀ ବିଭୁନାମ କୀର୍ତ୍ତନରେ ପାଗଳିନୀ ହୋଇ ସକଳ ବାଧା ବିଘ୍ନ ଲଙ୍ଘନକରି ମହତ୍ତ୍ୱ ଅନ୍ୱେଷଣରେ ଧାବମାନ, ଉତ୍ତରରେ ଅତୁଚ୍ଚ ଶୈଳଶୃଙ୍ଗ ଦର୍ପଭରେ ମସ୍ତକୋତ୍ତୋଳନକରି ମହାକାଶତଳେ ଖର୍ବ ସଦୃଶ୍ୟ ରହିଅଛି । ପୂର୍ବରେ ପତ୍ରପୁଷ୍ପଶୋଭିତ ପାଦପସକଳ ନିଜନିଜ ମସ୍ତକାବନତ କରି ଜଗତକୁ ଧନମ୍ରତା ଶିକ୍ଷା ଦେଉଅଛନ୍ତି ପଶ୍ଚିମରେ ଆଶ୍ରମ ନିକଟରେ ଶତ୍ରୁ ନିପାତ ଧ୍ୱଂସ ଜନ୍ତୁ ସକଳ ପରସ୍ପର ବିଦ୍ୱେଷଭାବ ଛାଡ଼ି ଈଶ୍ୱରଙ୍କ ମହିମାର ମହାତ୍ମ୍ୟ ପ୍ରଗ୍ଭର କରୁଅଛନ୍ତି । ଏ ବ୍ରଦ୍ଧ ପ୍ରାଣର ଦୁଃଖ ମୋଚନାର୍ଥେ ନାନାଦେଶ; ଗ୍ରାମ, କାନନ, ବନ ବୁଲୁଛି କିନ୍ତୁ ବାହିଁ ଏପରି ଶୋଭାତ ଦେଖିନାହିଁ

ବହୁ ମୁନି ଋଷିଙ୍କ ଆଶ୍ରମ ଦେଖିଛୁ କାହିଁ ଏପରି-ଆନନ୍ଦ ଅନୁଭବ କରିନାହିଁ, ତେବେ ଏହିକି ମୋର ଶାନ୍ତି ନିକେତନ, ଏହିକି ମୋର ଆନନ୍ଦଧାମ, ଏହିଠାରେ କଣ ମୋର ଦୁଃଖର ପରିଣାମ? (ସନ୍ୟାସୀଙ୍କୁ ଦେଖି) କିଏ ଏହି ସନ୍ୟାସୀ ଦର୍ଶନ ମାତ୍ରକେ ଚିତ୍ତବୃତ୍ତି ନିଜପଥ ହୁତଗଲା ଆତ୍ମା ପରମାତ୍ମା ମୁଖ ଦର୍ଶନ ଲାଭକଲା, ହୃଦୟକମଳ ପ୍ରସ୍ଫୁଟିତ ହୋଇ ଉଠିଲା, ଉପଯୁକ୍ତ ଗୁରୁ ପାଇଛି, ଏହାଙ୍କ ଠାରୁ ଦୀକ୍ଷା ଗ୍ରହଣକରି ଏହାଙ୍କର ପଦ ସେବାରେ ମୋର ଅନ୍ତିମକାଳ କଟାଇବି ।

( ନିକଟକୁ ଯାଇ ପ୍ରଣାମ କରିବା )

ଅମର—ଆୟୁଷ୍ମାନଭବ ।

ରୋହିଣୀ—ରକ୍ଷାକର ଗୁରୁଦେବ ! ଏ ଅଧମକୁ ରକ୍ଷାକର, ଶିଷ୍ୟ ଭାବେ ଗ୍ରହଣ କର, ବହୁଦିନୁ ଖୋଜିଖୋଜି ପାଇଛି, ମୋତେ ପଦରେ ଠେଲି ଦିଅନ୍ତୁନାହିଁ । ମୁଁ ବଡ ଦୁଃଖି ।

ଅମର—(ସ୍ବଗତ) କିଏ ଏ ବାଳକ ? ଏହାର କଣ୍ଠସ୍ବର ଅତୀବ ମଧୁର ହେଲେହେଁ ସ୍ବରରେ ନୈରାଶ୍ୟର ଦାରୁଣଚିହ୍ନପରି ଲକ୍ଷିତହେଉଅଛି, ଏହା ସହିତ ଆଜ ଜୀବନର ପ୍ରଥମସାକ୍ଷାତ ହେଲେହେଁ ଅତି ନିକଟରେ ସୁହୃଦପରି ବୋଧ ହେଉଅଛି । ଏହାରସହିତ ଆଳାପ ନଥିଲେ ହେଁ ନୟନଯୁଗଳ ହୃଦୟରେ ବହୁଦିନର ସ୍ମୃତି ଜାଗ୍ରତ କରାଉଛି (ପ୍ରକାଶ୍ୟେ) ଉଠ ବତ୍ସ, ନିଜରପରିଚୟ ଦିଅ?

ରୋହଣୀ—କି ପରିଚୟ ଦେବି ପ୍ରଭୁ ! ଈଶ୍ବରଙ୍କ ସୃଷ୍ଟିରେ ମୁଁ ଅତି ଅକିଞ୍ଚନ ।

ଅମର—ତୁମ୍ଭେ ବାଳକ ମାତ୍ର, ଏ ଶୈଶବାବସ୍ଥାରେ ତୁମ୍ଭର ଏପରି ପରିବର୍ତ୍ତନ ହେଲା କିପରି ?

ରୋହିଣୀ—କ ପରିବର୍ତ୍ତନ ପ୍ରଭୋ ! ମୋତେ ରକ୍ଷାକରିବା ପାଇଁ ମୋର ଦୁଃଖ ମୋଚନ କରିବା ପାଇଁ ମୁଁ ତମର ପିତାଙ୍କୁ ଖୋଜୁଛି ସେଥିରେ ବା ନୂତନ କଣ ?

ଅମର—ତୁମ୍ଭର କ ସଂସାରରେ କେହି ନାହିଁ ?

ରୋହିଣୀ—ଅଛି, ପଞ୍ଚଭୂତମୟ ଶରୀର ଅଛି, ପରନ ନାହିଁ, ସର୍ବ ମୋହ ପିଞ୍ଜରାବଦ୍ଧ ଜୀବ ଅଛି, ଜ୍ଞାନନାହିଁ, ସର୍ବଶକ୍ତି ରୂପିଣୀ ମା ଅଛନ୍ତି ବଭୂତ ନାହିଁ ।

ଅମର—[ସ୍ୱଗତ] ଏହି ବାଳକର ଏତେଦୂର ବକ୍ତତା, ଏପରିଜ୍ଞାନୋଦୟ, ଏ ନିଶ୍ଚୟ ମୋପରି ଦୁଃଖୀ, ଅବାଲ୍ୟ ସଂସାରର ଅବର୍ତ୍ତନରେ ପଡ଼ି ଅଭିଜ୍ଞତା ଓ ବୁଦ୍ଧିର ପରିଚାଳନଦ୍ୱାରା ବେଳାଭୂମି ପାରହେବାକୁ ସମର୍ଥ ହୋଇଛି, ଏ ନିଶ୍ଚୟ ମହତ୍‌କୁଳ ସମ୍ଭୂତ, ତା ନହେଲେ ଏତେ ଅଳ୍ପ ବୟସରେ ସଂସାର ପ୍ରତି ବୈରାଗ୍ୟ କାହିଁ ଜନ୍ମିଲା, ନିରାଶ୍ରୟ ମାନବ ସଂସାରଯନ୍ତ୍ରଣାକୁ ମହା ସୁଖ ମନେକରି ମନୁଷ ବରାହ ସଦୃଶ୍ୟ ବିଷୟପଙ୍କରେ ଲିପ୍ତଥାଏ, ସେ କ ନିଜର ଶରୀର ପ୍ରତି ଦୃଷ୍ଟି ରଖେ । [ପ୍ରକାଶ୍ୟେ] ମୁଁ ତୁମ୍ଭର କଥାରେ ସନ୍ତୋଷ ଲାଭ କରିଛି । ତୁମ୍ଭର ଯଦି ଇଚ୍ଛା ହୁଏ ଏହି ଆଶ୍ରମରେ ନିରୁଦ୍ବିଗ୍ନ ମନରେ ରହିପାର ॥

ରୋହିଣୀ—ଯଥା ପ୍ରସ୍ତାବିତଗୁରବ !

—※—

ଷଷ୍ଠଦୃଶ୍ୟ—ଅନ୍ତଃପୁର ।

(ରାଣୀଙ୍କର ଦାସ୍ୟାମାନ ଓ ରାଜାଙ୍କର ପ୍ରବେଶ )

ରାଜା—ପ୍ରୀୟେ ! ଅଜ କାହିଁକି ଏପରି ଦେଖାଯାଉଛ ? ତୁମ୍ଭର ଦେହ କଣଭଲନାହିଁ ?

ରାଣୀ—ଆପଣଙ୍କ ଅନୁଗ୍ରହରୁ ଖୁବ୍ ଭଲଅଛି ମହାରାଜ !

ରାଜା—ତେବେ କିଣ ମନ ଖରାପ ଅଛି ?

ରାଣୀ—ମନ ଖରାପ କାହିଁକି ହେବ ? ତେବେ ଭାବୁଥିଲି--

ରାଜା—ଏପରି କି ଗୁରୁ ଚିନ୍ତା ଯେ କାହାପାଇଁ ଏତେ ଭାବୁଥିଲ ?

ରାଣୀ—ଭାବୁଥିଲି ଆପଣ ମୋର ପୁତ୍ର ଅଜୟଙ୍କୁ ଭଲ ପାଆନ୍ତି ନାହିଁ-ମହାରାଜ !

ରାଜା—ଏହା କାହିଁକି କହିଲ ରାଣୀ ?

ରାଣୀ—ତାହା ହୋଇଥିଲେ ମୋର ଅଜୟ ବର୍ତ୍ତମାନ ପ୍ରାପ୍ତବୟସ୍କ ଓ ତରୁଣ, ତାରକ ବିବାହର ଆୟୋଜନ କରନ୍ତେ ନାହିଁ ?

ରାଜା—କେଉଁ ପିତା ପୁତ୍ରର ସୁଖ କାମନା କରେନାହିଁ ? କିନ୍ତୁ ଉପଯୁକ୍ତ କନ୍ୟାଟିଏ ହେଲେ ଯିନା ବିବାହ ଦେବ ।

ରାଣୀ—କାହିଁକି ! ଖୋଜିବାରିତ ଆବଶ୍ୟକ ନାହିଁ, ଶୁଣିଛି ସାହାପୁର ରାଜକନ୍ୟା ସର୍ବଗୁଣାଳଂକୃତା ଓ ସୁନ୍ଦରୀ, ସାହାପୁର ରାଣୀମଧ୍ୟ ଆମ୍ଭସହିତ ସୌଖ୍ୟ ସ୍ଥାପନ କରିବାକୁ ଇଚ୍ଛୁକା । ତେଣୁ ଅମର ସହିତ ତାଙ୍କ ଜେମାର ବିବାହ ପ୍ରସ୍ତାବ ଆମ୍ଭ ନିକଟକୁ ପଠା-ଇଥିଲେ, ମାତ୍ର ସେସମୟରେ ନାନାବିଧ ଅସୁବିଧା ଯୋଗୁଁ ସେ ପ୍ରସ୍ତାବ କିଛିଦିନପାଇଁ ସ୍ଥଗିତ କରା ହୋଇଥିଲା, ବର୍ତ୍ତମାନ ଅମର ପରିବର୍ତ୍ତେ ଅଜୟ ସହିତ ବିବାହ ଦେବାକୁ ପ୍ରସ୍ତାବ କରି ପଠାଇଲେ ହେଲା, ତାଙ୍କର ବା ସେଥିରେ ଆପତ୍ତି ହେବ କିଣ ?

ରାଜା— ମୁଁ ସେ ବିଷୟ ଅନେକଦିନୁ ଭାବିଥିଲି, ଏବେ ସେହି ଉଦ୍ଦେ-ଶ୍ୟରେ ସାହାପୁରକୁ ଦୂତ ପଠାଇଥିଲି; ମାତ୍ର ଅଳ୍ପ ଦୂତଫେରି ଆସି କହିଲା--

ରାଣୀ—କଣ ଯାହାପୁର ରାଣୀ, ଏ ପ୍ରସ୍ତାବରେ ସ୍ୱୀକୃତା ହେଲେନାହିଁ ।

ରାଜା—ନା ସେ କାହିଁକି ଅସ୍ୱୀକୃତା ହେବେ, ତେବେ ତାଙ୍କର କନ୍ୟା ରୋହଣୀ, ଅମର ମୃତ୍ୟୁ ସମ୍ବାଦ ପାଇବାଦିନୁ ନିରୁଦ୍ଦେଶ୍ୟ, ଯାହାପୁର ରାଣୀ ଚାରିଆଡେ ଦୂତପଠାଇ ଖୋଜି ରହିଲେଣି କିନ୍ତୁ କୌଣସି ସମ୍ବାଦ ପାଇଲେନାହିଁ । ଅଜ କାଲି ମଧ୍ୟ ତାଙ୍କର ଖୋଜା ଲାଗିଛି, କନ୍ୟାର ଅଦର୍ଶନରେ ଯାହାପୁରରାଣୀ ମୃତପ୍ରାୟ । କିନ୍ତୁ ମୁଁ--

ରାଣୀ—କଣ ମୁଁ ଏପର ଯଦି ପୁତ୍ର ସ୍ନେହ ଥିଲା ତାହାହେଲେ ମୋତେ ଛାଡ଼ ନଦେଇ ରଖିଲ କାହିଁକି ଏତେ ଯଦି ମମତା ଥିଲା ପିତା ପୁତ୍ର ଦୁଇପାଖରେ ବସି ବାରବିଳାସିନୀର ଅଙ୍ଗ ଉପଭୋଗ ନକରି ଅମରକୁ ଦଣ୍ଡିଲ କାହିଁକି ଏହିସବୁ ଆପଣଙ୍କର ଅଜୟ ପ୍ରତି ଛନ୍ଦା, ଅଜୟ ଯଦି ମୋର ଗର୍ଭଜାତ ନହୋଇ ସପତ୍ନୀର ପୁତ୍ର ହୋଇଥାନ୍ତା ତାହାହେଲେ କି ଆଜି ଅଜୟ ଆପଣଙ୍କ ହୃଦୟର ସମସ୍ତ ସ୍ନେହର ଅଧିକାରୀ ହୋଇ ବସିନଥାନ୍ତା, ମୋ ସକାଶେ ସିନା ତାକୁ ଏତେ ଅନାସ୍ଥା, ତା ପ୍ରତି ଏତେ ହତାଦର ।

ରାଜା—ରାଗକରନାହିଁ ରାଣୀ; ମୁଁ ତୁମ୍ଭ ସକାଶେ ଅମରକୁ ଛାଡ଼ିଛି ।

ରାଣୀ—ମୋ ସକାଶେ କଣ ଛାଡ଼ିଲ ଆପଣ ରାଜା ରାଜସିଂହାସନରେ ବସିଅଛନ୍ତି, ଦୋଷ ବିଗୁର କରି ଦଣ୍ଡ ଦେଇଅଛନ୍ତି; ଏତ ଆପଣଙ୍କର କର୍ତ୍ତବ୍ୟ କରି ଅଛନ୍ତି ।

ରାଜା—କ୍ରୋଧାନ୍ଧ ହୋଇ କର୍ତ୍ତବ୍ୟରେ ତ୍ରୁଟି କରଛ ରାଣୀ ।

ରାଣୀ—ତେବେ ମୋ କଥାରେ ବିଶ୍ୱାସ ନାହିଁ ।

ରାଜା—ବିଶ୍ୱାସ ନଥିଲେ ଅମରକୁ ପ୍ରାଣଦଣ୍ଡ ଦେଇଥାନ୍ତି ରାଣି, ମୁଁ ନିଜକୁ ଅବିଶ୍ୱାସ କରିପାରେ, ତୁମ୍ଭଙ୍କୁ ଅବିଶ୍ୱାସ କରି ପାରେ-

ନାହିଁ । ତୁମେ ମୋର ସର୍ବସ୍ୱ, ପ୍ରୟୋଜନ ହେଲେ ତୁମର ଇଷ୍ଟସାଧନ ପାଇଁ ଏ ରାଜରକ୍ତ ମଧ୍ୟ ଦେଇପାରେ ।

ରାଣୀ—ଛି ସେପରି କାହିଁକି କହୁଅଛନ୍ତି ମହାରାଜ ! ବର୍ତ୍ତମାନ ଅଜୟ କେଉଁଠି, କାହିଁ ସକାଳୁ ତ ମୁଁ ଦେଖୁନାହିଁ

ରାଜା—ଅଜୟ ଆଜ ମୃଗୟାକୁ ଯାଇଛି, ଫେରିବାର ସମୟ ହେଲଣି ବର୍ତ୍ତମାନ ବୋଧହୁଏ ଆସିବ, ମୁଁ ଯାଏ ଦେଖେ ।

(ଉଭୟଙ୍କର ପ୍ରସ୍ଥାନ)

——

ସପ୍ତମଦୃଶ୍ୟ—"ବନ"

(ଅଜୟସିଂହଙ୍କର ମୃଗୟାବେଶେ କ୍ଲାନ୍ତଭାବେ ପ୍ରବେଶ)

ଅଜୟ—ଏବେତ ଆସି ଘୋର ଜଙ୍ଗଲରେ ପଡ଼ିଲି ଦେଖୁଛି ମୁଁ ପଥ ଭ୍ରଷ୍ଟ । ଏ ଜଙ୍ଗଲ ମଧ୍ୟରେତ ପଥ ଚିହ୍ନିବାପରି ବୋଧ ହେଉ-ନାହିଁ, ପାତ୍ରମନ୍ତ୍ରୀ ଓ ସୈନ୍ୟମାନେ ଅନେକ ପଛରେ ଅଛନ୍ତି, ମୁଁ ହରିଣ ଛୁଆକୁ ଗୋଡ଼ାଇ ଗୋଡ଼ାଇ ଅନେକଦୂର ଚାଲି-ଆସିଛି, କେଉଁ ଆଡ଼େତ ବାଟ ଦେଖୁନାହିଁ, ଫେରିବ କିପରି ତୃଷାରେ କଣ୍ଠ ଶୁଷ୍କ, କ୍ଷୁଧାରେ ଶରୀର ଅବଶ ହୋଇ ଆସିଲାଣି ଆଉ ଚାଲିବାକୁ ମୋର ବଳ ପାଉନାହିଁ । କଣ କରିବ ଈଶ୍ୱର ନହେ ରକ୍ଷାକର, ଈଶ୍ୱରଙ୍କୁ ଡ଼ାକିବ ବା କାହିଁକି, ସେ'ବା କାହିଁକି ମୋ ଡାକ ଶୁଣିବେ, ଯେତେବେଳେ ଭୟାତୁର ମୃଗଶାବକ ପ୍ରାଣ ବିକଳରେ ଆଗେ ଆଗେ ପଳାଉଥିଲା, ମୁଁ ତାର ଜୀବନ ନେବାକୁ ପଛେ ପଛେ ବାଣହସ୍ତ ଓ ବଦ୍ଧପରି-କର ହୋଇ ଗୋଡ଼ାଉଥିଲି, ସେତେବେଳେ ତ ଡାକିନାହିଁ, ସେତେବେଳେ ନିଜର ଶୌର୍ଯ୍ୟ ଉପରେ ନିର୍ଭର କରି ଦର୍ପ-



ହରେ ଘୋଡାଇ ଥିଲୁ, ତେଣୁ ଦର୍ପହାରୀ ମଧୁସୂଦନ ଅଭିର ଆର୍ତ୍ତି ଶ୍ରବଣ କରି ଦାମ୍ଭିକଙ୍କୁ ଉପଯୁକ୍ତ ଶାସ୍ତି ଦେଇଅଛନ୍ତି, ଆଉ ରକ୍ଷା ନାହିଁ; ଅନ୍ନ ଜଳାଭାବେ ହୀନସ୍ଥାନ ପଡ଼ି ଏହି ଅରଣ୍ୟରେ ପ୍ରାଣଯିବ

ମୂର୍ଚ୍ଛା

(ସହସା ଜଳପାତ୍ର ହସ୍ତେ ଅମରସିଂହଙ୍କର ପ୍ରବେଶ)

ଅମର—(ଦୂରୁଁ ଦେଖି) ଘୋର ଅରଣ୍ୟ ମଧ୍ୟରେ କିଏ ଏହି ଶ୍ରାନ୍ତ ପଥିକ ଏ କଣ ତସ୍କରଙ୍କଦ୍ୱାରା ଆହତ, ନା-ପଥଭ୍ରଷ୍ଟ ହୋଇ କ୍ଳାନ୍ତ ବଶତଃ ନିଦ୍ରିତ ନା ଏତ, ମୂର୍ଚ୍ଛିତ ହୋଇ ପଡ଼ିଛି ମଧ୍ୟେ ମଧ୍ୟେ ଅସ୍ଫୁଟସ୍ୱରରେ ପାଣି ପାଣି ବୋଲି ଚିତ୍କାର କରୁଛି । ମୋର ଆଉ ଟିକିଏ ବିଳମ୍ବ ହୋଇଥିଲେ ବୋଧହୁଏ ଯୁବକଟିର ପ୍ରାଣ ରହିନଥାନ୍ତା । (ନିକଟକୁ ଯାଇ ଜଳଦେବା) ଏଯେ ଅଜୟ ! ମୋର ପ୍ରାଣର ଭାଇ ଅଜୟ ! ଆ ଭାଇ, ତୋତେ ଏତେ ଯତ୍ନକରି ପାଳିଥିଲି, ଥରେ ହେଲେ ଆଖିପୁରାଇ ଦେଖି ନାହିଁ, ଆଉ ଜୀବନରେ ସାକ୍ଷାତ ହେବ ବୋଲି ଆଶା ନଥିଲା, ଈଶ୍ୱର ତୁମ୍ଭେ କେଡେ ଦୟାଳୁ ଆଜ ମୋର ବହୁଦିନର ବାସନା ପୂର୍ଣ୍ଣକଲ, ଭାଇଠାରୁ ଶେଷ ବିଦାୟ ନେଇ ନଥିଲି ବୋଲି ମନରେ ବଡ ଦୁଃଖ ଥିଲା, ଆଜ ତାହା ଘୁଞ୍ଚାଇ ଦେଲେ ଆ ଭାଇ ! ତୋର ଏ କୋମଳ ଶରୀର ଆଲିଙ୍ଗନ କରି ଥରେ ହେଲେ ଏ ସନ୍ତପ୍ତ ପ୍ରାଣକୁ ଶୀତଳ କରେ ।

(ଆଲିଙ୍ଗନ କରିବା ଓ ଅଜୟସିଂହ ଉଠିବା)

ଅଜୟ — ଆପଣଙ୍କର ଏ ନରପିଶାଚ ପ୍ରତି ଅସୀମ କରୁଣା, ହେ ଦୟା-

ମସ୍ତ ! ଆପଣଙ୍କର ପରିଚୟ ଦେଇ, ମୋତେ ଅନୁଗୃହୀତ କରନ୍ତୁ ।

ଅମର — ତୁମେ ବଡ଼ କ୍ଷୁଧାତୁର ହୋଇଅଛ, କିଛି ଫଳମୂଳ ଖାଇ ଆଗକୁ ସୁସ୍ଥ କର, ପରେ ଅନ୍ୟସବୁ କଥାବାର୍ତ୍ତା ।

ଅଜୟ — ନା ଭଗବନ୍ ! ମୋର ଆଉ କ୍ଷୁଧା ନାହିଁ କି ତୃଷା ନାହିଁ, ଏ ଅଧମକୁ ଯେ ଅମୃତ କଣା ପାନ କରାଇ ଅଛନ୍ତି, ତଦ୍ୱାରା କ୍ଷୁଧା, ତୃଷା, କ୍ଳାନ୍ତି ସମସ୍ତ ଦୂରହୋଇ ଯାଇଛି । ମୋର ଦୁର୍ବଳତା ଗଲାଣି । ମୁଁ ବର୍ତ୍ତମାନ ପୂର୍ବାପେକ୍ଷା ଶତଗୁଣ ବଳବାନ ହୋଇଛି ହେ ଗୁରୁଦେବ ! ମତେ ଆପଣଙ୍କର ପରିଚୟ ଦିଅନ୍ତୁ ।

ଅମର — ମୁଁ ଜଣେ ସନ୍ନ୍ୟାସୀ, ମୋର ଆଶ୍ରମ ଏହି ନିକଟରେ ମୁଁ ପୂଜୋପକରଣ ସଂଗ୍ରହ କରିବାକୁ ଆସି ଏଠାରେ ତୁମ୍ଭଙ୍କୁ ମୂର୍ଚ୍ଛିତ ହୋଇ ପଡ଼ିଥିବାର ଦେଖିଲି । ମୁଁ ବୁଝୁଛି ତୁମ୍ଭେ ପଥ ଭ୍ରଷ୍ଟ ହୋଇ ଏଠାକୁ ଚାଲି ଆସିଛ । ଚାଲ ମୁଁ ତୁମ୍ଭଙ୍କୁ ପଥ ଦେଖାଇ ଦେଉ ଆସେ ।

ଅଜୟ — ମୁଁ ଆପଣଙ୍କୁ ଛାଡ଼ି ଯିବି ନାହିଁ । ଆପଣଙ୍କର ଯଦି ମୋ ଉପରେ ସାମାନ୍ୟ ମାତ୍ର ଅନୁଗ୍ରହ ଥାଏ; ତେବେ ଦୟାକରି ଯାଇ କୁଟୀରକୁ ପଦରଜ ଦ୍ୱାରା ପବିତ୍ର କରନ୍ତୁ ।

ଅମର — ତୁମ୍ଭେ ଯେ ରାଜାର ପୁତ୍ର ପାଇ କୁଟୀର କଣ କହୁଛ ?

ଅଜୟ — ପାପ-ଜନ-ମନ-ହାରିଣୀ, ରାଜ୍ୟ-କାମନା ଆଦି-ପଦ ଅବ-ନତ ମସ୍ତକା, କନକ ଭୋଗ ବିଭବ ଯାହାପଦ ପ୍ରାନ୍ତରୁ ସଦୃଶ୍ୟ ତାଙ୍କ ନିକଟରେ ସାମାନ୍ୟ ବିଳାସପୁର ରାଜ-ଭବନ କୁଟୀର ନହୋଇ ପ୍ରାସାଦ ? ମୋତେ ଲଜ୍ଜିତ କରନ୍ତୁ ନାହିଁ ଗୁରୁ ।

ଅମର—ତୁମ୍ଭର ସରଳ ଓ ମଧୁର ଭାବରେ ମୁଁ ମୁଗ୍ଧ ହୋଉଛି । ମୁଁ ତୁମ୍ଭର ଅଭ୍ୟର୍ଥନା ଗ୍ରହଣ କରିବାକୁ ଦ୍ୱିଧା କରୁନାହିଁ, ମାତ୍ର ମୋର ଗୋଟିଏ ଶିଷ୍ୟ ଅଛନ୍ତି, ସେ ଗ୍ରାମ ନଗର ଭିତରକୁ ଯିବାକୁ କିମ୍ବା କୌଣସି ଲୋକଙ୍କ ସଂସ୍ପର୍ଶରେ ଆସିବାକୁ ଚାହାନ୍ତି ନାହିଁ । ତାଙ୍କୁ ଛାଡ଼ି ଯାଇ ପାରିବି ନାହିଁ । ସେ ବଡ଼ ଶାନ୍ତ, ଧୀର, ସେ ମୋର ହୃଦୟ ରାଜ୍ୟ ଅଧିକାର କରି ରହିଅଛନ୍ତି, ତାଙ୍କର ମୁଖରେ ଏପରି ନୈସ୍ୟ ର୍ଗିକ ଜ୍ୟୋତି ଅଛିଯେ ଦେଖିଲା ମାତ୍ରକେ ମନ ଅପୂର୍ବ ଆନନ୍ଦ ରସରେ ପ୍ଲାବିତ ନହୋଇ ରହିବ ନାହିଁ, ସେ ମୋର ବଡ଼ ପ୍ରିୟ ।

ଅଜୟ—ତେବେ ଆଶ୍ରମକୁ ଚାଲନ୍ତୁ ଯିବା ମୁଁ ତାଙ୍କୁ ଯେଉଁ ଉପାୟରେ ହେଉ ନେବି ।

(ଆଶ୍ରମକୁ ଉଭୟଙ୍କର ଯିବାକାଳେ ରୋହଣୀଙ୍କର ପ୍ରବେଶ)

ରୋହଣୀ—(ଅଜୟଙ୍କୁ ଦେଖାଇ) ଏ କିଏ ସୁନ୍ଦର !

ଅମର—ସେ ବଳାସ ପୁରର ଯୁବରାଜ ! ଆଜି ଆମ୍ଭର ଅତିଥି ।

ଅଜୟ—ଅତିଥି ନୁହେଁ । ନିମନ୍ତ୍ରକ ।

ରୋହଣୀ—କେଉଁଠାକୁ ନିମନ୍ତ୍ରଣ ?

ଅଜୟ—ମୋର କ୍ଷୁଦ୍ର କୁଟୀରକୁ ।

ରୋହଣୀ—ଗୁରୁ ଯାଇପାରନ୍ତି, ମୁଁତ ଯିବିନାହିଁ ।

ଅଜୟ—ଅଧମର ଏପରି ଦୋଷକଣ ? ଯାହାଦ୍ୱାରା ଅତିଥି ସତ୍କାରରୁ ବଞ୍ଚିତ ହେବ ?

ରୋହଣୀ—ତୁମ୍ଭେଯଦି ଅକପଟରେ ମୋର ପ୍ରଶ୍ନର ଉତ୍ତର ଦେବ ତେବେ ମୁଁ ଯିବି ?

ଅଜୟ—ପଶୁବନ୍ତୁ ।
ରୋହିଣୀ—ବିଳାସପୁର ଯୁବରାଜଙ୍କ ନାମ ଅମର ଥିଲାନା ?
ଅମର—(ସ୍ୱଗତ) ଏ କାହୁଁ ଜାଣିଲା ?
ଅଜୟ—ସେ କଥା ଉତ୍ଥାପନ କରି ଏ ପ୍ରାଣର ଜ୍ୱାଳା ବଢାନ୍ତୁ ନାହିଁ ।
ରୋହିଣୀ—କାହିଁକି ତାଙ୍କର କଣ ହୋଇଛି ?
ଅଜୟ—ପିତା ନିଜର ଭ୍ରମ ବଶତଃ ତାଙ୍କୁ ମହାପାପରେ ଲିପ୍ତ କରାଇ ତାଙ୍କର ପ୍ରାଣନାଶ କରିଛନ୍ତି !
ରୋହିଣୀ—ଭ୍ରମ ବଶତଃ ଏହା କଣ ଠିକ୍ ଜାଣ ?
ଅଜୟ—ଠିକ୍ ଜାଣେ, କୌଣସି ଗର୍ହିତକାର୍ଯ୍ୟ ତାଙ୍କଦ୍ୱାରା ହୋଇ ନ ପାରେ ଯେ ତାଙ୍କୁ ଜାଣେ ସେ କଦାପି ବିଶ୍ୱାସ କରିବ ନାହିଁ,
(ରୋହିଣୀ ମ୍ଳାନମୁଖ କରିବା)
ଅମର—ଏକଣ ବାଳକର ମୁଖ କାହିଁକି ହଠାତ୍ ଏପରି ବିବର୍ଣ୍ଣ ହୋଇ ଗଲା ? ଅମର ଯେପରି ଏହାର ଅନ୍ତରଙ୍ଗ ବନ୍ଧୁ ।
ରୋହିଣୀ—ନା, ଯୁବରାଜ ! ମୁଁ ଆପଣଙ୍କର ଅନୁରୋଧ ରକ୍ଷା କରିବାକୁ ଅକ୍ଷମ । ଜନ ସମୁଦ୍ରର ଫୁତ୍କାର ବିନିର୍ଗତ ବିଷଜ୍ୱାଳା ମୋର ଅସହ୍ୟ । ଅକୃତଜ୍ଞ ମନୁଷ୍ୟର ଛଳନା ପୂର୍ଣ୍ଣ ବଚନାବଳି ମୋପକ୍ଷେ ଦୁଃସହ । କୋଳାହଳପୂର୍ଣ୍ଣ ସହର ଅପେକ୍ଷା ନିବିଡ ଅରଣ୍ୟ ଶତଗୁଣେ ଆନନ୍ଦ ଦାୟକ । ମୁଁ ଭାଗ୍ୟଲକ୍ଷ୍ମୀର ମଧୁମୟ କ୍ରୋଡ଼ରେ ଅବାଲ୍ୟ ପ୍ରତିପାଳିତ ହୋଇ ସର୍ବବିଧ ବିଷୟ ଭୋଗ କରୁଛି, କିନ୍ତୁ କାହିଁରେ ପରିତୃପ୍ତି ଲାଭ କରିନାହିଁ କି ଅଧିକ ସମୟ ସମାଜ ଶାସନରେ ରହିବାକୁ ମନ କରୁନାହିଁ ।
ଅମର—ବୁଝିଛି ତୁମ୍ଭର ମନ ସଂସାରର ନଶ୍ୱରତା ସ୍ମରଣ କରି କରି ଏକା ବେଳେକେ ବିତରାଗ ହୋଇ ପଡ଼ିଛି । ଅହରହ ଶତ-

ଶତ ଜ୍ୱଳନ୍ତ ପ୍ରମାଣ ପ୍ରତ୍ୟକ୍ଷୀଭୂତ କରି ସୁଦ୍ଧା ମାନବ ଅଗ୍ନିଶିଖା ପ୍ରତି ପତଙ୍ଗ ସଦୃଶ ବିଷୟାକୃଷ୍ଟ ହେବାର ଦେଖି ଭୂମିର ଆତ୍ମା ପରିତ୍ରାଣ ନିମନ୍ତେ କ୍ରନ୍ଦନ କରୁଅଛି, କିନ୍ତୁ ନିଜର ଶିକ୍ଷା ଓ ଅଭିଜ୍ଞତା ଦ୍ୱାରା ଯଦି ଜୀବନର ଉପକାର କରି ନହୁଏ, ତେବେ ଶିକ୍ଷାର ଫଳ କଣ ? ବା ସେ ଅଭିଜ୍ଞତାର ମୂଲ୍ୟ କଣ ? ସେଥିପାଇଁ ବୁଦ୍ଧ ଶଙ୍କରାଦି ମହାତ୍ମାଗଣ ମହାତତ୍ତ୍ୱାନ୍ୱେଷଣ ପାଇଁ ସଂସାର ପରିତ୍ୟାଗ କରି ମଧ୍ୟ ମନୁଷ୍ୟର ଅତି ନିକଟରେ ଥାଇ ଜୀବଉଦ୍ଧାର ପାଇଁ ଦେଶେ ଦେଶେ ଗ୍ରାମେ ଗ୍ରାମେ ବୁଲି ଧର୍ମ ପ୍ରଚାର କରୁଥିଲେ, ଅତ୍ୟାଗ୍ରହ ସମ୍ମୁଖରେ ପ୍ରାଣବଳି ଦେଇ କାତର କଣ୍ଠରେ ସେମାନଙ୍କୁ କ୍ଷମା ଦେବାକୁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ; ତେବେ ଆମ୍ଭେମାନେ ସ୍ୱାର୍ଥସିଦ୍ଧି ନିମନ୍ତେ ଏଠାରେ ଲୁଚି ରହିବା, ନା ବୁଲି ଆମ୍ଭମାନଙ୍କ ଦ୍ୱାରା ଯଦି ଜଗତରେ କିଛି ଉପକାର ସାଧିତ ହୋଇପାରେ ତାହାହିଁ କରିବା ।

ରୋହିଣୀ — ଆପଣଙ୍କର ଆଜ୍ଞା ଶିରୋଧାର୍ଯ୍ୟ ।।

--:0:--

ଡ୍ରପ୍

# ଚତୁର୍ଥ ଅଙ୍କ ।

## ପ୍ରଥମ ଦୃଶ୍ୟ — କକ୍ଷ

ରାଜା — ଆପଣ ମୋ ପ୍ରାଣପ୍ରିୟ ଅଜୟଙ୍କୁ ବଞ୍ଚାଇ ଯେଉଁ ଉପକାର କରିଅଛନ୍ତି, ସେଥିପାଇଁ ମୁଁ ଆପଣଙ୍କ ନିକଟରେ ଚିରଋଣୀ ।

ଅମର—କି ଉପକାର କରିଛି ମହାରାଜ ? ମୋର କର୍ତ୍ତବ୍ୟ ମୁଁ କରି ପାରିଛି, ଏଥିରେ ଅଧିକ କଣ ?

ରାଜା—ଏ ସଂସାରରେ କେତେଜଣ କର୍ତ୍ତବ୍ୟ ପାଳନ କରନ୍ତି, ସମସ୍ତେ ଯଦି ନିଜ ନିଜର କର୍ତ୍ତବ୍ୟ ପାଳନରେ ବ୍ରତୀ ହୁଅନ୍ତି, ତାହାହେଲେ ଏ ସଂସାର ନନ୍ଦନ କାନନରେ ପରିଣତ ହୁଅନ୍ତା ।

ଅମର—ତା ସତ୍ୟ ମହାରାଜ ! ତେବେ ଅନେକ ସମୟରେ ମନୁଷ୍ୟ ସଂସାରର ମାୟାରେ ପଡ଼ି କର୍ତ୍ତବ୍ୟ ସ୍ଥିର କରି ନପାରି ଭ୍ରମ କରିଥାଏ ।

ରାଜା—ଯାହାହେଉ ଛାଡ଼ନ୍ତୁ, ସେକଥା ଆପଣ କେତେଦିନୁ ଏପରି ସନ୍ୟାସୀ ବ୍ରତ ଅବଲମ୍ବନ କଲେଣି ।

ଅମର—ମହାରାଜ ! ମୁଁ ମୋର ମାତାଙ୍କୁ ହରାଇବାପରେ ଏକ ପ୍ରକାର ସନ୍ନ୍ୟାସୀ ବ୍ରତ ଅବଲମ୍ବନ କରିଛି ।

ରାଜା—ମାତୃ ବିୟୋଗ ଆପଣଙ୍କର କଣ ଏ ବୈରାଗ୍ୟର ଏକମାତ୍ର କାରଣ ?

ଅମର—ଏକମାତ୍ର କାରଣ ହୋଇ ନପାରେ ତେବେ ତାହା ପ୍ରଧାନ କାରଣ । ମହାରାଜ ! ଆପଣ ଜାଣନ୍ତି ନାହିଁ ଯାହାର ମାତା ନାହିଁ ତାର ଏ ସଂସାରରେ କେହି ନାହିଁ ସନ୍ତାନର ମାତାହିଁ ଶ୍ରେଷ୍ଠ ସମ୍ପଦ ! ପିତା କେବଳ ଜ୍ଞାନର ଅଧିକାରୀ ।

ରାଜା—ତେବେକଣ ଆପଣ ସଂସାରର ସମସ୍ତ ମାୟାଛାଡ଼ି ଦେଇଛନ୍ତି,

ଅମର—ପ୍ରାୟ ଏକପ୍ରକାର ସନ୍ତୁଟିଛି ଯାଇଛି, ଏ ଅକୂଳ ଅନନ୍ତ ସଂସାରରେ ମୋର ବୋଲି କହିବାକୁ କେହି ନାହାନ୍ତି ତେବେ ଏହି ଯେ (ରୋହିଣୀକୁ ଦେଖାଇ) ମୋର ଶିଷ୍ୟଟି ଅଛନ୍ତି, ତାଙ୍କର ସେବା ସୁଶ୍ରୁଷା ନିଷ୍କପଟ ସରଳ ସ୍ୱଭାବରେ ମୋର ମାୟା ଜନ୍ମିଛି, ଛାଡନ୍ତୁ ସେକଥା ମହାରାଜ ! ଆପଣଙ୍କର ରାଜ୍ୟର ସବୁ କୁଶଳତ ।

ରାଜା — ଆପଣଙ୍କର ଆଶୀର୍ବାଦରୁ ସବୁ ଏକ ପ୍ରକାର ଚାଲୁଛି ।

ଅମର—ମହାରାଜ ! ମୁଁ ଶୁଣିଲି ଆପଣଙ୍କର ଦୁଇଟି କୁମାର, ସେମାନଙ୍କର ସବୁ କୁଶଳ ତ ?

ରାଜା—ଜ୍ୟେଷ୍ଠପୁତ୍ର କୌଣସି ଗୁରୁତର ଅପରାଧ କରିଥିବାରୁ ତାଙ୍କର ପ୍ରାଣଦଣ୍ଡ ହୋଇଅଛି, କନିଷ୍ଠ ପୁତ୍ରର ସବୁ ସମ୍ବାଦତ ଆପଣ ଜାଣନ୍ତି ।

ଅମର—ଆପଣ ରାଜା, ଆପଣଙ୍କର ପୁତ୍ର ଏପରି କି ଅପରାଧ କଲେ ଯେ ଆପଣ ତାଙ୍କର ପ୍ରାଣ ଦଣ୍ଡର ଆଦେଶ ଦେଲେ ?

ରାଜା—କହନ୍ତୁ ନାହିଁ ମହାଶୟ, ସେକଥା ସ୍ମରଣ କଲେ ହୃଦୟ ଫାଟି ଯାଉଛି । ରାଜାର କର୍ତ୍ତବ୍ୟ ବଡ କଠୋର ଆପଣତ ସର୍ବଦର୍ଶି, ଆପଣଙ୍କୁ ମୁଁ କଣ କହିବି । ବର୍ତ୍ତମାନ ବେଳ ହୋଇ ଗଲାଣି, ଆପଣଙ୍କର ଭୋଜନାଦିର ବନ୍ଦୋବସ୍ତ କରିଦେବି । ମନ୍ତ୍ରୀ ମହାଶୟ ! ସନ୍ନ୍ୟାସୀଙ୍କର ସବୁ ବନ୍ଦୋବସ୍ତ କରିଦିଅ ।

ମନ୍ତ୍ରୀ—ଯେ ଆଜ୍ଞା । ଆସନ୍ତୁ ମହାଶୟ ।

(ମନ୍ତ୍ରୀସହ ସନ୍ନ୍ୟାସୀ ବେଶଧାରି ଅମର ନିଗ୍ରହଣୀ ପ୍ରସ୍ଥାନ)

ରାଜା—ଆଜି ଏହି ସନ୍ନ୍ୟାସୀଙ୍କୁ ଦେଖି ମୋରମନ ଏପରି ଅସ୍ଥିର ହେଉଛି କାହିଁକି ? ମୋର ହୃଦୟ କମ୍ପଇ—

———

ଦ୍ୱିତୀୟଦୃଶ୍ୟ—ରାଜପ୍ରସାଦ ସମ୍ମୁଖ ।

(ସନ୍ନ୍ୟାସୀ ବେଶଧାରୀ ଅମରସିଂହ ପଦ ଚାଳନ କରୁ କରୁ)

ଅମର—ବିଧାତାଙ୍କର ବିଚିତ୍ର ଲୀଳା କିଏ ବୁଝି ପାରିବ ? ମାନବ ନିଜର ବୁଦ୍ଧିର ଗର୍ବ କରେ, କିନ୍ତୁ ଥରେ ହେଲେ ଭାବେ ନାହିଁ ଯେ ଲୀଳାମୟଙ୍କ ସୃଷ୍ଟିରେ ତାର ସ୍ଥାନ କେଉଁଠାରେ । ଏ

ପହେଳିକାମୟଲୀଳାର ଅନ୍ତ କେଉଁଠାରେ ଅନ୍ତ ବା କେଉଁଠାରେ ? ଏଥିରେ ଅବା ବିଧାତାଙ୍କର କେଉଁ ଉଦ୍ଦେଶ୍ୟ ସାଧିତ ହେଉଛି ; କ୍ଷୁଦ୍ର ମାନବ ପକ୍ଷରେ ଏ ରହସ୍ୟ ଭେଦ କରିବାର ଚେଷ୍ଟା ବିଡ଼ମ୍ବନା ମାତ୍ର ! ସଂସାରର ଭୀଷଣଆବର୍ତ୍ତ ମଧ୍ୟରେ ପଡ଼ି ସଂସାରର ସ୍ପୃହା ତ୍ୟାଗ ସନ୍ନ୍ୟାସୀ ହୋଇଥିଲି, ସେଥିରେ ପୁଣି କଏ ଏହି ବାଳକଟି ଆସି ମୋ ମନରେ ମାୟା ଜନ୍ମାଇ ଦେଉଛି, ଏହାକୁ ଦେଖିଲେ କାହିଁକି କେଜାଣି ଅଲକ୍ଷିତ ଭାବରେ ମୋର ଆଖି ଆଗରେ ମୋର ସେହି ରଣ ଭୂମିରେ ଜୀବନ ଦାୟିନୀ ମାନସୀ ପ୍ରତିମାର ଛବି ଅଙ୍କିତ ହେଉଛି । ( ଚିନ୍ତିତ ଭାବେ କିଛିକ୍ଷଣ ନୀରବ ) ନା, ବୃଥାଚିନ୍ତା ଏପରି ସରଳ ହୃଦୟ ନିଷ୍କପଟ ବାଳକ ପକ୍ଷରେ ଛଳନା ଅସମ୍ଭବ । ନାଃ ସେସବୁ ଭାବି କାର୍ଯ୍ୟ ନାହିଁ । ବର୍ତ୍ତମାନ ମହାରାଜ ଓ ଅଜୟର ସମ୍ବାଦତ ଏକପ୍ରକାର ପାଇଲି, କଥା ବାର୍ତ୍ତାରୁ ଯେପରି ବୁଝିଲି ପିତା ନିଜର ଅବିମୃଷ୍ୟ କାରିତା ପାଇଁ ଅନୁତାପ କରୁଅଛନ୍ତି । ମା, କପରି ଅଛନ୍ତି । ତାତ ଜାଣି ପାରିଲି ନାହିଁ, ସେ ଯେପରି ଠିକ ଧନେ ଯେ ପିତାଙ୍କର ସର୍ବନାଶ କରି ପାରନ୍ତି । ପିତା ତାଙ୍କ ରୂପରେ ବିମୋହିତ ହୋଇ ତାଙ୍କୁ ଯେପରି ସରଳା ବୋଲି ବିଶ୍ୱାସ କରନ୍ତି, ତହିଁରେ ପିତାଙ୍କର ଅନିଷ୍ଟ ହୋଇପାରେ, ବର୍ତ୍ତମାନ ରାତି ଅନେକ ହେଲଣି, ଟିକିଏ ବିଶ୍ରାମ କରେ ।

( ରାଣୀଙ୍କର ଶିଡିଦେଇ ଧିରେ୨ ରାଜ ପ୍ରସାଦରୁ ଓହ୍ଲାଇବା )

ଏ କିଏ ? ଏ ଘୋର ରଜନୀରେ ରାଜ ପ୍ରାସାଦରୁ ବାହାରି କେଉଁ ଆଡେ ଯାଉଛି ? ଏତ ଦେଖୁଛି ସ୍ତ୍ରୀଲୋକ ? ଏତେ ରାତ୍ରରେ

ବାହାରକୁ ଆସିବାର ପ୍ରୟୋଜନ କଣ ? ଗୃହିଆତେତ ପ୍ରହରୀ ମାନେ ଜାଗ୍ରତ ଅଛନ୍ତି, ତେବେ କୁଆଡୁ ଆସିଲା ? ନା ଏତ ଠିକ୍ ରାଜ ପ୍ରାସାଦ ମଧ୍ୟରୁ ଆସିଲା, ଏହାର ନିଶ୍ଚୟ କିଛି କାରଣ ଅଛି, ଏହା ପଛେ୨ ଲୁଚ ଲୁଚ ଯାଏଁ, ସବୁ ବୁଝି-ପାରିବ ।

( ପ୍ରସ୍ଥାନ )

—*—

ତୃତୀୟଦୃଶ୍ୟ—କକ୍ଷ

( ଗୁଣଧର ପ୍ରବେଶ )

ଗୁଣଧର—କାହିଁ, ମୋର କାର୍ଯ୍ୟତ ସାଧିତ ହେଲନାହିଁ ? ପ୍ରତହିଂସା ସାଧନ ପାଇଁ ପ୍ରାଣ ପଣ କରିଛି, କିନ୍ତୁ ଯଦି କାର୍ଯ୍ୟ ସମାଧା ହେବା ପୂର୍ବରୁ ଧରାପଡ଼େ ତେବେ ଉପାୟ କଣ ? ନା ମୋର କର୍ତ୍ତବ୍ୟରେ କଦାପି ତୃଟି କରିବ ନାହିଁ ।

(ରାଣୀଙ୍କର କକ୍ଷ ମଧ୍ୟକୁ ଯିବା ଅମରସିଂହ ନିକଟସ୍ଥ ଗଛରେ ଲୁଚିବା)

( ରାଣୀପ୍ରତି ) ଏପରି ସବୁଦିନେ ଡେରିକଲେ ଚଳିବ ନାହିଁ, ମୁଁ କିଛି ପଇସା ଦିଆ ଚାକର ନୁହେଁ ବା ଭଡ଼ାଦିଆ କୁଲି ନୁହେଁ ଯେ ନିତ ନିତ ଡମଆସିବାକୁ ରହି ବସିଥିବ ।

ରାଣୀ—ପ୍ରାଣେଶ୍ୱର ! ଦାସୀର ସମସ୍ତ ଅପରାଧ ମାର୍ଜନା କରନ୍ତୁ, ଦାସୀତ ସ୍ୱଇଚ୍ଛାରେ ବିଳମ୍ବ କରୁନାହିଁ ।

ଗୁଣଧର—ସ୍ୱଇଚ୍ଛା ନୁହେଁତ ପରଇଚ୍ଛା ? ମୁଁତ କହିଲି ସେ ବୁଢା ରଜାଟାକୁ ମାରିପକା ତାହାହେଲେ ବାଟ ସଫା, ନା ତା ହେବ ନାହିଁ । ଏଣେ ପୁଅ ପୁତ୍ରକୁ ଲୋଭ, ତେଣେ ତେଲ ଘଡ଼କି ଲୋଭ ।

ରାଣୀ—କିପରି ମାରିବ ପ୍ରାଣେଶ୍ୱର ? ଧରାପଡଲେ ଯେ ମୋର ଦୁର୍ଭାଗ୍ୟର ସୀମା ରହିବ ନାହିଁ ।

ଗୁଣଧର—ନା ସେସବୁ ବାଜେ ଆପତ୍ତି ମୁଁ ଶୁଣିବାକୁ ଇଚ୍ଛା କରେନାହିଁ । ବୁଢା ରଜାଠାରେ ଇଚ୍ଛା, ନା ମୋଠାରେ ଇଚ୍ଛା, ସଫାସଫା ଟୋକ୍‌ଟିଏ କଥା କହିଦିଅ ସବୁ ଛିଣ୍ଡି ଯାଉ, ଏତେ ଗୋଳମାଳରେ କାମକଣ ?

ରାଣୀ—ମୁଁ ଯେ ଶ୍ରୀ ପଦ୍ମରେ ମନପ୍ରାଣ ଢାଳି ଦେଇଛି ।

ଅମର—( ସ୍ୱଗତ ) କି ଆଶ୍ଚର୍ଯ୍ୟ ! ଏତ ମୋର ସେହି ବିମାତା, ନା ମୁଁ ମୋର ଆଖିକି ବିଶ୍ୱାସ କରିବ ନାହିଁ ।

ଗୁଣଧର—ମନ ପ୍ରାଣଢାଳି ଦେଇଛ, ବୁଢାଟାକୁ ଏତେ ଲୋଭ କାହିଁକି ? ନା ସେସବୁ ହେବନାହିଁ । ଏକ ବୃନ୍ତରେ ଦୁଇଟା ଫଳ ରହିନପାରେ । ହୁଏତ ସେ, ନହେଲେ ମୁଁ, ରଜାକୁ ନମାରିଲେ ମୋର ଅଶାଗୁଡ଼ ।

ରାଣୀ—ପ୍ରାଣକାନ୍ତ ! ଆପଣଙ୍କ ଅଦର୍ଶନରେ ମୁଁ ଯେ ବଞ୍ଚି ପାରିବି ନାହିଁ । ତୁମ୍ଭପାଇଁ ରଜାର ଜ୍ୟେଷ୍ଠପୁତ୍ର ଅମରକୁ କୌଶଳ କରି ମରାଇଲି, ଏବେ ରଜାଙ୍କୁ କପରି ମାରିବ ସେ ଉପାୟ ଉଦ୍ଭାବନ ତୁମ୍ଭ ଉପରେ ଥିଲା ।

ଅମର—ମୁଁ କଣ ମତେ ଅବିଶ୍ୱାସ କରିବ; ଏ ଯେ ନିଶ୍ଚେ ରାଣୀ ଭଗବାନ ! ଏକି ଦୃଶ୍ୟ ଦେଖାଉଛ ! ଜଗତରେ ସମସ୍ତ ଅନିଷ୍ଟର ମୂଳ କଣ ନାରୀ ! ନାରୀର ମାୟା ବୁଝିବା ସହଜ ନୁହେଁ ।

ଗୁଣ—ଏହି ନିଅ । ଏ ଛୁରୀରେ ରଜାଙ୍କର ବକ୍ଷସ୍ଥଳ ଭେଦ କରାଇବ, ରଜାଙ୍କର ମୃତ୍ୟୁ ଯନ୍ତ୍ରଣା ଶବ୍ଦଶୁଣି ଯେ ଆସିବ ତାର ନାମରେ ଦୋଷାରୋପ କରିବ, ତୁମ୍ଭେ ରାଣୀ ତୁମ୍ଭ କଥା ସମସ୍ତେ ବିଶ୍ୱାସ

କରିବେ । ଅଜସ୍ର ବସ୍ତ୍ରପତ୍ର ହେବ । ସେ ତୁମ୍ଭଙ୍କୁ ଲେଶମାତ୍ର ସନ୍ଦେହ କରିବ ନାହିଁ ।

ରାଣୀ—ଠିକ୍ କହୁଛ ପ୍ରାଣେଶ୍ୱର ! ( ଛୁରୀ ନେଇ ) ତେବେ ମୁଁ ଯାଉଛି ଶୀଘ୍ର କାର୍ଯ୍ୟ ଶେଷ କରେ । ( ପ୍ରସ୍ଥାନ )

ଅମର—ଏ ଯେ ଘୋର ପାପିୟସୀ, ବର୍ତ୍ତମାନତ ଯାଇଁ ରାଜାଙ୍କୁ ମାରି ପକାଇବ, ମୁଁ କଣ କରିବି । ମୁଁ ତ ରକ୍ଷା କରିବାକୁ ଗଲେ ନିଜେ ମରିବି, ଈଶ୍ୱର ବୁଦ୍ଧି ଦିଅ, ଯାହାହେଉ ପଛକେ ପିତାଙ୍କୁ ରକ୍ଷା କରିବି, ଏ ଜୀବନ ଦେନେହେଲେ ଯିବ, ବନ୍ଧୁ ଦେନରୁ ଯାଇଥାନ୍ତା, ଈଶ୍ୱର କୌଣସି ମହତ୍ ଉଦ୍ଦେଶ୍ୟ ସାଧନ କରିବାକୁ ରଖିଥିଲେ ଏହାପେକ୍ଷା ଅନ୍ୟ କଣ ମହତ ହୋଇ-ପାରେ, ପିତାଙ୍କର ପ୍ରାଣରକ୍ଷା କରିବି, ରାଜାଙ୍କର ଜୀବନ ରକ୍ଷା କରିବି, ଦେଶ ରକ୍ଷା କରିବି, ଏହି ସାମାନ୍ୟ ଜୀବନ ଦାନ ଦ୍ୱାରା ଯଦି ଏତେଗୁଡ଼ଏ କାର୍ଯ୍ୟ ସାଧିତ ହୋଇପାରେ ତାହା-ହେଲେ ଏ ପ୍ରାଣ ଥାଇ କଣ ? ଶିଘ୍ର ଯାଏଁ ! (ବେଗେ ପ୍ରସ୍ଥାନ)

ଗୁଣଧର—ଏହିଥର ମୋର କାର୍ଯ୍ୟ ସିଦ୍ଧି ହୋଇଛି, ଆଉ ଏଠାରେ ରହିବା ମୋର ନିରାପଦ ନୁହେଁ, ଏଠାରୁ ଶୀଘ୍ର ପଳାଇଲେ ରକ୍ଷା । ( ପ୍ରସ୍ଥାନ )

—୦—

ଚତୁର୍ଥ ଦୃଶ୍ୟ—ପ୍ରାଚୀର ।

(ଛୁରିକାହସ୍ତେ ରାଣୀଙ୍କର ପ୍ରାଚୀର ଦରଜା ଦେଇ ସିଡ଼ିଉପର ଦେଇ ଧିରେ୨ ପ୍ରସ୍ଥାନ ତତ୍ପଶ୍ଚାତେ ସନ୍ୟାସୀ ବେଶଧାରୀ ଅମରସିଂହଙ୍କର ତଥା କରଣ ।)

"ପଞ୍ଚଦରବର୍ଦ୍ଧନ"

—୫୦୦୫—

ପଞ୍ଚମ ଦୃଶ୍ୟ—ଅନ୍ତଃପୁର ମଧ୍ୟସ୍ଥ ଶୟନକକ୍ଷ ।

( ପଲଙ୍କୋପରେ ରାଜାଙ୍କର ଶୟନ, ରାଣୀଙ୍କର ଛୁରିକାହସ୍ତେ ପ୍ରବେଶ )

ରାଣୀ—(ଛୁରି ଉତ୍ତୋଳନକରି) ମୋର ହାତ ଯେ ଥରୁଛି କପର ମାରିବ ? ( ଚାରିଆଡକୁ ଚାହିଁ ) କେହିତ ନାହିଁ ,

( ଛୁରିକାଘାତ )

ଅମର—ଓଃ ରକ୍ଷାକରିପାରିଲନାହିଁ । ପିଶାଚୀ କଣକଲୁ! ନଜର ସ୍ୱାମୀ ବୋଲି ଧବେଚନା କଲୁନାହିଁ ?

ରାଣୀ—(ଛୁରି ନକ୍ଷେପକରି ଓ କୃତ୍ରିମ କ୍ରନ୍ଦନକରି) ପ୍ରହରୀ, ପ୍ରହରୀ, ଦୌଡ଼ିଆସ, ରାଜାଙ୍କୁ ରକ୍ଷାକର, ରାଜାଙ୍କୁ ରକ୍ଷାକର, ତସ୍କର ଯେ କକ୍ଷମଧ୍ୟରେ ପଶି ରାଜାଙ୍କୁ ମାରିପକାଉଛି ।

( ପ୍ରହରୀଗଣ ଓ ଦାସୀଗଣଙ୍କର ପ୍ରବେଶ )

ଏହି ସନ୍ୟାସୀ କକ୍ଷ ମଧ୍ୟକୁ ଆସି ଛୁରିକାଘାତରେ ରାଜାଙ୍କର ପ୍ରାଣ ନାଶକଲା । ( କ୍ରନ୍ଦନ )

୧ମ-ପ୍ର—ଧର ଶଳାକୁ ବାନ୍ଧ ।

୨ୟ ପ୍ର—(ବାନ୍ଧି) ଚାଲଶଳା ।

୧ମ-ପ୍ର – ଶଳା ସର୍ବନାଶକଲରେ, ଏ ଶଳାକୁ ଟିକଏ୨ କରି କାଟି ନିଆଁରେ ପୋଡ଼ିଲେ ତ ରାଗ ଯିବନାହିଁ, ଦାସୀ ତୁମେମାନେ ରାଣୀଙ୍କୁ ସମ୍ଭାଳ, ଆମେ ଏହାକୁ ମନ୍ତ୍ରୀଙ୍କ ପାଖକୁ ଘେନିଯାଉଛୁ ।

( ସନ୍ୟାସୀକୁ ଘେନି ପ୍ରସ୍ଥାନ )

ଷଷ୍ଠଦୃଶ୍ୟ—ରାସ୍ତା ।

( ଦାସୀ ଦ୍ୱୟଙ୍କର ପ୍ରବେଶ )

ପ୍ରଥମ – ଅଲୋ ଭଉଣୀ ! ନିଆଁ ଲଗା ବିଧାତା କଲା କଣ ? କାହୁଁ ଏ ନିଆଁଇପିଆ ବାଡପଡା ସନ୍ୟାସୀଟା ଆସି ଆମ ରଜାଙ୍କୁ ମାରି ପକାଇଲା ବାଡ଼ପଡା ଉପରେ ଚନ୍ଦ୍ରବାଡ଼ ପଡୁ ।

ଦ୍ୱିତୀୟ – ଅଲୋ ଭଉଣୀ ! ସେ ବାଡପଡା ଗଲା କୁଆଡେ ? ଏତେ କଥା ହେଲା ମୁଁ କଛି ଜାଣେ ନାହିଁ, ନଦବେ ଶୋଇ ପଡ଼ିଥିଲି, ସକାଳୁଉଠ ଶୁଣିଲି ଯେ ସେ ଯନ୍ୟାସୀଙ୍କା ମହାରାଜାଙ୍କୁ କାଟି ପକାଇଛି, ଅସ୍ଥ ରାଣୀ କଣ କରୁଛନ୍ତି କହୁଲଭଲା ?

ପ୍ରଥମ – କରବେ କଣ ! କାନ୍ଦକାନ୍ଦ ଚୁପହୋଇ ରହିଲେଣି । ବୁଝିଲୁ ଭଉଣୀ, ଆମର କପାଳ ମନ୍ଦ, ଯେଉଁ ଡାଳ ଧରିଲୁ ସେଡ଼ାଳ ଭାଙ୍ଗିଲା ।

ଦ୍ୱିତୀୟ – ଅଲେ ଭଉଣୀ ଏତେ ପହରା ଦଉଦଉ ସେ କାଟିକିଆ ଭିତରକୁ ଅସିଲା କପରି ? ଏ ବଡ ଅଦ୍ଭୁତ କଥା !

ପ୍ରଥମ – ଅଲୋ ଚୋରକୁ କଣ ବାଟ ଅଛଉଣା ଅଛି, ବୋଧହୁଏ ଟେ ଅମ୍ବଗଛ ବାଟେ ଯାଇଥିବ ।

ଦ୍ୱିତୀୟ – ଅଜ କେତେବେଳେ ମନ୍ତ୍ରୀମହାଶୟ ବିଗ୍ଭର କରିବେ ? ସେ ନଇଣୁଅକୁ ଖଣ୍ଡଖଣ୍ଡ କର କାଟି ନିଆଁରେ ପକାନ୍ତେ କି ? ଗ୍ଭଲଗ୍ଭଲ ଯିବା ଗ୍ଭଲ, କୋଠା ଉପରେ ଠିଆ ହୋଇ ଦେଖିବା ମନ୍ତ୍ରୀମହାଶୟ କପରି ବିଗ୍ଭର କରୁଅଛନ୍ତି ।

ପ୍ରଥମ – ହଁ, ଶୀଘ୍ରଗ୍ଭଲ ।

( ଉଭୟଙ୍କର ପ୍ରସ୍ଥାନ )

=୦=

ସପ୍ତମଦୃଶ୍ୟ – "ବିଗ୍ଭରାଳୟ"

(ଅଜୟସିଂହ ଆସୀନ, ମନ୍ତ୍ରୀ ଦଣ୍ଡାୟମାନ ଏକପାର୍ଶ୍ୱେ ବନ୍ଦୀକୁ ଘେନି ପ୍ରହରୀମାନେ ଦଣ୍ଡାୟମାନ ।)

ଅଜୟ—(ବନ୍ଦି ପ୍ରତ) ତୁମ୍ଭେ ରାଜାଙ୍କୁ ମାରିଅଛ ?

ଅମର—ଆଜ୍ଞା ନା,

ଅଜୟ—ତୁମ୍ଭେ ନଅର ମଧ୍ୟରେ ପ୍ରବେଶ କରିଥିଲ ?
ଅମର—ଆଜ୍ଞା ହଁ ।
ଅଜୟ—ରାଜାଙ୍କ ପ୍ରକୋଷ୍ଠ ମଧ୍ୟକୁ ?
ଅମର—ଆଜ୍ଞା ମହାରାଜ !
ଅଜୟ—ନଅର ମଧ୍ୟକୁ କେଉଁ ବାଟେ ଗଲ ?
ଅମର—ଯେଉଁ ବାଟେ ମନୁଷ୍ୟ ଯାଉଥିଲେ ।
ଅଜୟ—ତୁମ୍ଭ ସଙ୍ଗରେ ଅନ୍ୟ କିଏ ଥିଲା ନା, ଏକା ?
ଅମର—ଜଣେ ଥିଲା, କିନ୍ତୁ ସେ ଏଠାରେ ନାହିଁ ।
ମନ୍ତ୍ରୀ—ସେ ସବୁ ପାଗଳାମି ରଖିଦିଅ, ବର୍ତ୍ତମାନ ଯେ ଅପରାଧ କରିଛ ତାହାର ଦଣ୍ଡ କଣ ଜାଣ ?
ଅମର—ଜାଣେ, ଏ ଅପରାଧର ଦଣ୍ଡ ପ୍ରାଣଦଣ୍ଡ, କିନ୍ତୁ ଅପରାଧୀ କିଏ ?
ମନ୍ତ୍ରୀ—ଅପରାଧୀ କିଏ ? ଏକଥା ପଚାରିବା ଯାଏ ଅଛ ? ପ୍ରହରୀ ! ବନ୍ଦୀକୁ ନେଇଯାଇ ଶୃଙ୍ଖଳ ଆରୋହଣ କର ।

( ବାଳକବେଶଧାରୀ ରୋହଣୀର ପ୍ରବେଶ )

ରୋହଣୀ—ଧନ୍ୟରାଜା ଧନ୍ୟମନ୍ତ୍ରୀ ! ଏଥିସକାଶେକି ଆଦର ଗୌରବ କରି ନେଇ ଆସିଥିଲ, ପ୍ରତାରକ ମାନବକୁ ବିଶ୍ୱାସ କରିବା କଦାପି ଉଚିତ ନୁହେଁ, ସେଥି ସକାଶେ ମନୁଷ୍ୟ ସମାଜକୁ ଆସିବାକୁ ମନା କରୁଥିଲ, କିନ୍ତୁ ଗୁରୁ ମହାଶୟ (କ୍ରନ୍ଦନ)
ଅମର—ଦୁଃଖ କରନାହିଁ ଯୁବକ ! ସତ୍କାର୍ଯ୍ୟ କରିବାକୁ ଯାଇ ଜୀବନ ଗଲେ ଦୁଃଖ କଣ ?
ମନ୍ତ୍ରୀ—ଯାଅ ନେଇଯାଅ ।
ଅଜୟ—ସ୍ଥିର ହୁଅ ମନ୍ତ୍ରୀ, ବର୍ତ୍ତମାନ ଅଜୟସିଂହ ବର୍ବରପତି ।

ବୈହଣୀ—ଭିକ୍ଷା ମାଗୁଛି ଯୁବରାଜ ! ଦୟାକର ମୋର ପ୍ରାଣ ନାଶ ପ୍ରଥମ କରନ୍ତୁ । ଯେପର ଗୁରୁଙ୍କର ଦଣ୍ଡ ଦେଖିବ ନାହିଁ ।

ଅଜୟ—ସନ୍ୟାସୀ ! ରାତ୍ରରେ ଗୋପନରେ ନଅର ମଧ୍ୟରେ ପଶି ରାଜାଙ୍କୁ ହତ୍ୟା କରିବା କି ମହତ୍କାର୍ଯ୍ୟ ?

ଅମର—ବୃଥା ଦୋଷାରୋପ କରନ୍ତୁ ନାହିଁ ଯୁବରାଜ ! ମୁଁ ପ୍ରାଣ ଭିକ୍ଷା କରୁନାହିଁ କିନ୍ତୁ ଯଦେ ମୁଁ ଆପଣଙ୍କର ପ୍ରାଣ ଇଷାକର ଥିଲି, ଅଜ ମୋର ମରିବା ପୂର୍ବରୁ ମୋ କଥା ଶୁଣି ସେହି ଋଣ ପ୍ରତିଶୋଧ କରନ୍ତୁ ।

ଅଜୟ—ତେବେ ତୁମ୍ଭର ବକ୍ତବ୍ୟ ପ୍ରକାଶ କର ।

ଅମର—ମୁଁ ସମସ୍ତଙ୍କ ଆଗରେ ପ୍ରକାଶ କରିବି ନାହିଁ ଯୁବରାଜ ! କେବଳ ଆପଣଙ୍କୁ ନିଭୃତରେ ।

ଅଜୟ—ତେବେ କକ୍ଷମଧ୍ୟକୁ ଚାଲ ।

(ସନ୍ୟାସୀ ଅଜୟସିଂହ ଏକଦିଗେ, ଅନ୍ୟାନ୍ୟମାନେ ଏକ ଦିଗେ । )

( ପ୍ରସ୍ଥାନ । )

—*—

## ଅଷ୍ଟମ ଦୃଶ୍ୟ—କକ୍ଷ ।

( ଅଜୟସିଂହ ଓ ଅମରସିଂହଙ୍କର ପ୍ରବେଶ )

ଅମର—ଯୁବରାଜ ସାହେବ ! ଆପଣ ତ ଜାଣନ୍ତି ମୁଁ ଜଣେ ସନ୍ୟାସୀ, ମୋର ସଂସାର ସହିତ ସମ୍ପର୍କ କଣ, ମୁଁ ବା ରାଜାଙ୍କୁ କାହିଁକି ମାରନ୍ତି, କାଲି ରାତରେ ମୁଁ ବସିଛି ଦେଖିଲି ଯେ ଗୋଟିଏ ରମଣୀ ନଅରରୁ ବାହାରି ନିର୍ଜନ ଗୃହଆଡକୁ ଗଲା, ମୁଁ ଉଠି ଦେଖେ ତ ସମସ୍ତ ପ୍ରହରୀ ଜାଗ୍ରତ ତେବେ ଏ କପରି ଆସିଲା, କାହିଁକି ବା ଅସିଲା, ଏ ବିଷୟରେ ମୋର

କୌତୁହଳ ହେବାରୁ ମୁଁ ରମଣୀର ପଶ୍ଚାତ୍‌ଗାମୀ ହେଲି । ଯାଇ ଦେଖିଲି ନିର୍ଜନ ଗୃହ ମଧ୍ୟରେ ଏହି ରମଣୀ ଜଣେ ଯୁବକ ସହିତ ପ୍ରେମାଳାପ କରୁଛି ଓ ରାଜାଙ୍କ ଜୀବନ ନାଶ ସକାଶେ ପ୍ରେମାଳାପ କରୁଛି । ଦୁଇଜଣଙ୍କ ମଧ୍ୟରେ ଠିକ୍‌ହେଲା ଯେ ଉକ୍ତ ରମଣୀ ରାଜାଙ୍କୁ ହତ୍ୟାକରିବ ଏବଂ ହତ୍ୟା ସମୟରେ ରାଜାଙ୍କର ଆର୍ତ୍ତନାଦ ଶୁଣି ଯେ ରାଜାଙ୍କୁ ରକ୍ଷା କରିବାକୁ ଆସିବ ରମଣୀ ତା'ର ଉପରେ ହତ୍ୟା ଦୋଷ ଅର୍ପଣ କରିବ । ଯେଣୁ ସେ ରାଣୀ ତାଙ୍କର କଥା କେହି ଅବିଶ୍ୱାସ କରିବେନାହିଁ, ମୁଁ ଏ ଷଡଯନ୍ତ୍ର ଶୁଣି ଏପରି ହତବୁଦ୍ଧି ହୋଇ ପଡ଼ିଲି ଯେ କ୍ଷଣକାଳ ନିମନ୍ତେ କର୍ତ୍ତବ୍ୟ ସ୍ଥିର କରିପାରି ନଥିଲି । ତେଣୁ ବିଲମ୍ବ ହେବାରୁ ରାଜାଙ୍କୁ ରକ୍ଷା କରି ପାରିଲି ନାହିଁ । ତାର ପର ସମସ୍ତ ଘଟଣାତ ଆପଣ ଜାଣନ୍ତି । ବର୍ତ୍ତମାନ ମୋର ବକ୍ତବ୍ୟ ଶେଷ ହୋଇଛି ଦୋଷାଦୋଷ ବିଗ୍ଭର କରି ଦଣ୍ଡ ବିଧାନ କରନ୍ତୁ । ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି ।

ଅଜୟ—ଏ ବିଷୟରେ ପ୍ରମାଣ ଦେଇ ପାରିବ ?

ଅମର—ପ୍ରମାଣ ମୋର ନାହିଁ, କେବଳ ସରଳ ବିଶ୍ୱାସ ।

ଅଜୟ—କ'ଣ କରିବ ! ଉଭୟ ସଙ୍କଟରେ ପଡ଼ି କର୍ତ୍ତବ୍ୟାକର୍ତ୍ତବ୍ୟ ସ୍ଥିର କରି ପାରୁ ନାହିଁ, ଏକ ଦିଗରେ ଜନ୍ମଦାତା ମାତା, ଅନ୍ୟ ଦିଗରେ ମାୟା ହିଂସାରହିତ ଜୀବନଦାତା ସନ୍ନ୍ୟାସୀ, କାହାକୁ ବିଶ୍ୱାସ କରିବି, କାହାକୁ ଅବିଶ୍ୱାସ କରିବି ।

ଅମର—ଆପଣ ମତେ ସମୟ ଦେଲେ ଓ ଆଜି ରାତ୍ରରେ ମୋର ଅନୁଗମନ କଲେ ସମସ୍ତ ବିଷୟ ବୁଝି ପାରିବେ ।

ଅଜୟ—ଅଚ୍ଛା, ତାହାହିଁ ହେବ, ଏବେ ଆସନ୍ତୁ ମହାଭାଗ !

( ଉଭୟଙ୍କର ପ୍ରସ୍ଥାନ )

—*—

ନବମ ଦୃଶ୍ୟ—ନିର୍ଜ୍ଜନ କକ୍ଷ ।

( ରାଣୀଙ୍କର ପ୍ରବେଶ ଓ ପଛରେ ଅଜୟସିଂହ, ଅମରସିଂହ ଲୁକ୍କାୟିତଭାବେ ରହିବା )

ରାଣୀ—ପ୍ରାଣେଶ୍ୱର, ପ୍ରାଣେଶ୍ୱର ! ଅଜ ତୁମ୍ଭ ପାଇଁ ବଡ ଶୁଭସମ୍ବାଦ ଆଣିଛି । ଦେଖ, ତୁମ୍ଭର କାର୍ଯ୍ୟ କପରି କୌଶଳରେ ସାଧନକରଛି କାହିଁ କେହିତ ନାହାନ୍ତି । ଲୁଚିଛ କି ପ୍ରାଣେଶ୍ୱର ! ଅଉ ଲୁଗ୍ ଚୋରରେ ପ୍ରୟୋଜନ ନାହିଁ, ସମସ୍ତ କଣ୍ଟକ ଦୂରହୋଇଛି, ଆସ, କେଉଁଠି ଲୁଚିଛ ଆସ, ଅଜ ତୁମ୍ଭଙ୍କୁ ନିଜ ହାତରେ ସଜା-ଇବ ! ଜବାବ ଦେଉନାହିଁ ଯେ, କ'ଣ ମୋର ବେଶୀ ବିଳମ୍ବ ହୋଇ ଗଲା ବୋଲି ରାଗ କରି ଗୁଲିଗଲ ? ନା ଅଜତ ମୁଁ ବିଳମ୍ବ କରି ନାହିଁ । ତେବେ ତାଙ୍କର ଅଜ ବିଳମ୍ବ ହୋଇଛି । ଯାଏଁ ଅଭିମାନ କରି ବସେଁ ।        ( ଅଭିମାନ କରି ବସିବା )

ଅଜୟ—( ଅସି ନିଷ୍କୋଷିତ କରି ) ଅସହ୍ୟ ଏହି ମୂହୂର୍ତ୍ତରେ ପାପୀ-ୟସୀକୁ ହତ୍ୟା କରିବ ।

ଅମର—ଧୈର୍ଯ୍ୟ ଧର ! ବର୍ତ୍ତମାନ କ୍ଷାନ୍ତ ହୁଅ, ପରେ ଦଣ୍ଡ ଦେବ । ହେଇ ଦେଖ, ସେହି ଦୁର୍ବୃତ୍ତ ଅସୁଛି ।

( ଗୁଣଧର ପ୍ରବେଶ )

ଗୁଣଧର—ଦାସ ପ୍ରତି ରାଗ କଲେ ଚଳିବ ନାହିଁ । କାର୍ଯ୍ୟଟି କପରି ଶେଷ କଲ ?

ରାଣୀ—ପ୍ରାଣେଶ୍ୱର ! ଅଜ ସବୁକାର୍ଯ୍ୟ ଶେଷକରଛି । ତମେ ଯେପରି କହିଥିଲ ଠିକ୍ ସେହି ପରି କରିଛି । କିନ୍ତୁ ବଡ ଆଶ୍ଚର୍ଯ୍ୟ, ଠିକ ମୋର କାର୍ଯ୍ୟ ଶେଷକଲା ବେଳକୁ ହଠାତ୍ ଜଣେ ସନ୍ନ୍ୟାସୀ ଯାଇ ମୋର ହାତ ଧରି ପକାଇଲା । ତହୁଁ ମୁଁ ଉଚ୍ଚସ୍ୱରେ କାନ୍ଦିବାକୁ

ଲାଗିଲି, ମୋର କ୍ରନ୍ଦନ ଶୁଣି ପ୍ରହରୀମାନେ ଧାଇଁ ଆସିଲେ, ସବୁ ଦୋଷଯାକ ସନ୍ନ୍ୟାସୀ ଉପରେ ଢାଳିଦେଇ ଆଉ କକେ ଯଫା ।

ଅଜୟ—ଓଃ ଓଃ ! କି ସର୍ବନାଶୀ ଏ ନାରୀ, ଏଦୃଶ୍ୟରେ କାହାର ହୃଦୟ ବିଦୀର୍ଣ୍ଣ ନ ହେବ । ସନ୍ନ୍ୟାସୀ ମହାଶୟ, କ୍ଷମା କରନ୍ତୁ, ଏ ପିଶାଚିକୁ ହତ୍ୟା ନ କରିବା ଯାଏ ମୋର ଶାନ୍ତି ନାହିଁ ।

ଗୁଣଧର—କିଛି ପ୍ରକାଶ ପାଇ ନାହିଁ ତ ?

ରାଣୀ—ସେ ବିଷୟରେ ନିଶ୍ଚିନ୍ତ ହୁଅ, ଏବେ ମୋତେ ଏହାର କି ପୁରସ୍କାର ଦେବ ଦିଅ ।

ଗୁଣଧର – ଏହି ତୋର ଉପଯୁକ୍ତ ପୁରସ୍କାର ।

( ଗୁଣଧର ଛୁରିଦ୍ୱାରା ରାଣୀକୁ ହତ୍ୟା କରିବାକୁ ଯିବାକାଳେ ଅମରସିଂହ ଦୌଡ଼ଯାଇ ଗୁଣଧରକୁ ଧରିବା ଓ ଅଜୟସିଂହଙ୍କର ପ୍ରବେଶ )

ଅଜୟ – କି ଏ ଅଛରେ ( ପ୍ରହରୀଙ୍କର ପ୍ରବେଶ ) ଏ ଦୁହିଁଙ୍କୁ ବନ୍ଦୀ କରି ନେଇ ଯାଅ ଏବଂ ପୃଥକ୍ ୨ ଦୁଇଟି ପ୍ରକୋଷ୍ଠ ମଧ୍ୟରେ ବନ୍ଧ କରି ରଖ ।

ପ୍ରହରୀଗଣ – ଯେ ଆଜ୍ଞା । ( ରାଣୀ ଓ ଗୁଣଧରକୁ ନେଇ ପ୍ରସ୍ଥାନ ) ସନ୍ନ୍ୟାସୀ ମହାଶୟ, ଆମ୍ଭେମାନେ ସମ୍ୟକ୍ ଅନୁସନ୍ଧାନ ନ କରି କି ଏକ ଗର୍ହିତ କାର୍ଯ୍ୟ କରିବାକୁ ବସିଥିଲୁ ? ବିଚାର ନ କରି ଜଣେ ନିର୍ଦ୍ଦୋଷୀ ଲୋକର ପ୍ରାଣନାଶ କରିବାକୁ ଯାଉଥିଲୁଁ । ସେହି ସର୍ବଦର୍ଶୀ ଦୟାମୟ ପରମପିତାଙ୍କ କୃପାରୁ ଆମ୍ଭମାନଙ୍କର ଭ୍ରମ ଦୂର ହୋଇଛି । ଆଜି ଆପଣଙ୍କର ଧୈର୍ଯ୍ୟ ଓ ସହାୟତା ଯୋଗୁଁ ସମସ୍ତ ଘଟଣାର ପ୍ରମାଣ ପାଇଲୁଁ । ମୁଁ ଆପଣଙ୍କ ନିକଟରେ ଶତ ଦୋଷରେ ଦୋଷୀ ମତେ କ୍ଷମା କରନ୍ତୁ ।

ଅମର—ରାଜକୁମାର ! ମୁଁ କ'ଣ କ୍ଷମା ଦେବି ? ସେହି କ୍ଷମାମୟ ହରି

ବଂଶୀଧାରୀଙ୍କୁ ପ୍ରାର୍ଥନା କରନ୍ତୁ । ସେ ଆପଣଙ୍କୁ କ୍ଷମା କରିବେ । ବର୍ତ୍ତମାନ ଚାଲନ୍ତୁ ରାଣୀ ଆସି ଶେଷ ପ୍ରାୟ, ମୋର ଶିଷ୍ୟଟି କାଲି ଠାରୁ ମୋତେ ହରାଇ ଓ ମୋହର ଏ ଦୁର୍ଦ୍ଦଶା ଦେଖି ପାଗଳ ହୋଇ ଯିବଣି । ମୁଁ ଯାଇ ତାକୁ ସାନ୍ତ୍ୱନା ଦିଏ ।

ଅଜୟ – ଚାଲନ୍ତୁ ମହାଶୟ !            ( ଉଭୟଙ୍କର ପ୍ରସ୍ଥାନ )

— O —

ଦଶମ ଦୃଶ୍ୟ – ପଥ ।

( ବିମଳାର ଗୀତ ଗାଇ ୨ ପ୍ରବେଶ )

ଏହିପରି ଅନ୍ଧକାରେ ବୁଡିଯାଇଛିରେ ମୋର ସୁଖତରୀ
କା'ଳ ସାଗର ନୀରେ । ୦ ।
ଦୂରିଥିଲା ଇନ୍ଦୁକରେ ସୁଧାଧାରେ କୁହୁକଳକଣ୍ଠ ସ୍ୱରେ
ଆଶାପାଲେ ସ୍ଫୀତବକ୍ଷେ ସୁଖ ମୋହେ ଅନ୍ଧ ଗେ୍ଖେ
ଭାସୁଥିଲା ଏକଲକ୍ଷେ, ଜୟପତାକା ଶିରେ । ୧ ।
କାଳମେଘେ ବ୍ୟୋମଘେରି ହାହା ରବେ ବାୟୁ ବହି,
ଛିଣ୍ଡାଇଲା ଆଶା ପାଲେ, ବୁଡିଲା ତରୀ ତୀରେ । ୨ ।

— O —

ବିମଳା – କାହିଁ ? ଗ୍ରାମ; ନଗର, ପ୍ରାନ୍ତର, କାନନ, ପର୍ବତ କେତେ ଖୋଜିଲଣି, କେଉଁଠାରେ ମୋର ପ୍ରାଣସଖିଙ୍କର ଅନୁସନ୍ଧାନ ପାଇଲି ନାହିଁ । ତେବେ ଣ ଯେ ରାଣୀ ମା; ଯେମାଙ୍କ ପାଇଁ ଅନ୍ନ ଜଳ ଛାଡି ଦେଇ ସାରିଲେଣି, ମୁଁ ବୃନ୍ଦାବା କାହିଁକି ତାଙ୍କ ସଙ୍ଗ ଛାଡି ଦେଲି ? ଭଗବାନ ସଂସାରରେ ଯେ ଭଲ ତା'ର କ'ଣ ଏତେ ବିପଦ ସ୍ୱାମୀ ହରାଇଲେ, ପୁଣି ସଂସାରର ଏକ- ମାତ୍ର ଅବଲମ୍ବନ କନ୍ୟା ତାହା ମଧ୍ୟ ହରାଇଲେ । କାହିଁ ।

ବିଳାସପୁର ଯୁବରାଜଙ୍କର ପତ୍ନୀ ହୋଇଥାନ୍ତେ, ତା ନ ହୋଇ କେଉଁ ଅଜ୍ଞାତ ରାଜ୍ୟରେ ବିଚରଣ କରୁଛନ୍ତି, ଆଉ ଉପାୟ କ'ଣ ? ଯାଏଁ ରାଣୀମାଙ୍କୁ ସମ୍ବାଦ ଦିଏଁ । ଅନ୍ୟ କେହିଁ ଉପଯୁକ୍ତ ଲୋକ ଉପରେ ଅନୁସନ୍ଧାନ ଭାର ଦିଅନ୍ତୁ, ମୁଁ ଅବଳା ବାଳିକା ମାତ୍ର । ଆଉ ଅଧିକ କ'ଣ କରିବି ? ଈଶ୍ୱର ! ତୁମ୍ଭର ଗତି ବିଚିତ୍ର । ( ପ୍ରସ୍ଥାନ )

—o—

ଏକାଦଶ ଦୃଶ୍ୟ— ରାଜସଭା ।

( ଅଜୟ ସିଂହ ସିଂହାସନରେ ଆସୀନ, ତତ୍ପାର୍ଶ୍ୱେ ମନ୍ତ୍ରୀ ଓ ସନ୍ନ୍ୟାସୀ ବେଶଧାରୀ ଅମରସିଂହ ଆସୀନ )

ଅଜୟ—ମନ୍ତ୍ରୀ ମହାଶୟ ! ଆମ୍ଭେମାନେ କ୍ରୋଧାନ୍ଧ ହୋଇ ଅବିଚାର କରିବାକୁ ବସିଥିଲୁ, ବିନାଦୋଷରେ ଏହି ମହାପୁରୁଷଙ୍କର ପ୍ରାଣ ଦଣ୍ଡ ଆଦେଶ ଦେବାକୁ ଉଦ୍ୟତ ହୋଇଥିଲୁ । ବର୍ତ୍ତମାନ ଏହାଙ୍କ ଅନୁଗ୍ରହରୁ ସମସ୍ତ ଘଟଣାର ଗୁପ୍ତ ପ୍ରମାଣ ମିଳିଛି, ପ୍ରହରୀ ବନ୍ଦୀ ଦ୍ୱୟଙ୍କୁ ଏହି ସ୍ଥାନକୁ ନେଇ ଆସ ।

ମନ୍ତ୍ରୀ—କ୍ଷମା କରନ୍ତୁ ସନ୍ନ୍ୟାସୀ ମହାଶୟ ! ଆମ୍ଭେମାନେ ହଠାତ୍ ବିପଦଗ୍ରସ୍ତ ହୋଇ କର୍ତ୍ତବ୍ୟ ନିର୍ଣ୍ଣୟ କରିପାରି ନ ଥିଲୁଁ ।

ଅମର—ସେପରି ହେବା ସ୍ୱାଭାବିକ, ଯାହାହେଉ ଭଗବାନଙ୍କ କୃପାରୁ ସତ୍ୟ ଉଦ୍‌ଘାଟିତ ହୋଇଅଛି ।

( ଉଭୟପାର୍ଶ୍ୱରୁ ବନ୍ଦିଦ୍ୱୟଙ୍କୁ ନେଇ ପ୍ରହରୀଙ୍କର ପ୍ରବେଶ )

ଅଜୟ—ଗୁଣଧର ତୁମ୍ଭେ ରାଜହତ୍ୟା ଦୋଷରେ ଦୋଷୀ ।

ଗୁଣଧର—ଆଜ୍ଞା ହଁ ଦୋଷୀ ।

ଅଜୟ—ଏପରି କାର୍ଯ୍ୟ କରିବାର ତୁମ୍ଭର ଉଦ୍ଦେଶ୍ୟ କଣ ?

ଗୁଣଧର — ଅବଶ୍ୟ ଉଦ୍ଦେଶ୍ୟ ଅଛି ଯୁବରାଜ, ଉଦ୍ଦେଶ୍ୟ ନ ଥାଇ କାର୍ଯ୍ୟ ହୁଏ ନାହିଁ । ଉଦ୍ଦେଶ୍ୟ ପ୍ରତିହିଂସା ସାଧନ, ତୁମ୍ଭେ ଜାଣନାହିଁ ଯୁବରାଜ ! ପ୍ରତିହିଂସା ପ୍ରବୃତ୍ତି ଯାହାର ହୃଦୟ ପ୍ରବେଶ ଅଧିକାର କରେ ତାର ପାପ ପୁଣ୍ୟ, ଧର୍ମାଧର୍ମ ସଦସତ ଜ୍ଞାନ ରହେନାହିଁ ଦିନେ ତୁମ୍ଭର ପିତାଙ୍କର ଜୀବନ ରକ୍ଷା କରିବାକୁ ଯାଇ ନିଜର ଜୀବନର ମାୟାଭୁଲି ଯାଇଥିଲି, କିନ୍ତୁ ସେଥିପାଇଁ କି ପୁରସ୍କାର ପାଇଲି ଜାଣ ? ନୀଚ ଚାଟୁକାରଙ୍କ ଚାଟୁବାକ୍ୟରେ ପିତା ତୁମ୍ଭର ଯେଉଁ ଦିନ ମୋର ସର୍ବସ୍ୱ ଧନରତ୍ନାଦି ଅପହରଣ କରି ନେଇ ଏ ରାଜ୍ୟରୁ ନିର୍ବାସିତ କରି ଦେଲେ, ଆଉ ମୋର ପ୍ରାଣପ୍ରିୟା ପତ୍ନୀ, ଓ ପ୍ରାଣାଧିକ ଶିଶୁଟି ଯେଉଁ ଦିନ ଅନଶନରେ ମୃତ୍ୟୁମୁଖରେ ପତିତ ହେଲେ ସେହି ଦିନୁ ପ୍ରତିହିଂସା ପ୍ରବୃତ୍ତି ମୋର ଶୂନ୍ୟହୃଦୟକୁ ଅଧିକାର କରି ବସିଛି । ଦେଖ ପ୍ରତିହିଂସା ପ୍ରବୃତ୍ତି ମୋତେ କିପରି ପିଶାଚରେ ପରିଣତ କରିଛି । କିନ୍ତୁ ପାହା ହେଉ ଶେଷରେ ମୋର କାର୍ଯ୍ୟ ଶେଷ ହୋଇଛି । ବର୍ତ୍ତମାନ ମୁଁ ଶାନ୍ତିରେ ମରି ପାରିବି ।

ରାଣୀ—ହାଃ, ହାଃ, ହାଃ, ମରିବୁ ମୁଁ କଣ ତତେ ମରିବାକୁ ଛାଡ଼ିଦେବି ଦେଖୁନାହୁଁ ରାଜା ଆଉ ଅମରର ପ୍ରେତାତ୍ମା କିପରି ମୋତେ ମରିବାକୁ ଛାଡ଼ୁ ନାହାନ୍ତି ।

ଅଜୟ—ଏ ଅପରାଧର ଦଣ୍ଡ କଣ ଜାଣ ଗୁଣଧର ?

ଗୁଣଧର—ଜାଣେ ମହାରାଜ ! କିନ୍ତୁ ତୁମ୍ଭଙ୍କୁ ସେ ଦଣ୍ଡରୁ ରକ୍ଷା କରିଛି, ନିଜେ ଏହାର ବନ୍ଦୋବସ୍ତ ମୁଁ କରି ସାରିଛି; ଏହି ଦେଖୁନାହିଁ-ବିଷଜ୍ୱାଳାରେ କିପରି ମୋର ସର୍ବାଙ୍ଗ ଅବସନ୍ନ ହୋଇ ଆସୁଛି କଣ୍ଠ- ଶୁଷ୍କ-ହୋଇଗଲାଣି-ଓଃ-ଓଃ (ପତନ) ପ୍ରା-ଣ ଗ ଲା- ମର-ଣ-ଏ

ପର-କ-ଷ୍ଟ-ବୋଲି-ଯା-ଣି -ନ-ଥିଲି ।

(ମୃତ୍ୟୁ)

ରାଣୀ — ମରଗଲୁ ? ଉଁ ହୁଁ ନା ମରିବ କାହିଁକି ?

ଅମର — ଦେଖିଲେ ଯୁବରାଜ ! ମୋର କଥା କେପରି ସତ୍ୟ ହୋଇଛି ପାପ ଓ ପ୍ରବଞ୍ଚନାର ବେଶିଦିନ ଲୁଚିରହି ପାରେନାହିଁ, ଯାହା ସତ୍ୟ ଯାହାଥିବ ତାହା ଦିନେହେଲେ ପ୍ରକାଶପାଏ ।

ଅଜୟ — ହଁ ମହାଶୟ ! ଆପଣଙ୍କ ଅଶୀର୍ବାଦରୁ ସବୁ ପ୍ରକାଶ ପାଇଛି କିଏ ଅଛରେ ଏ ପାପାତ୍ମାର ମୃତଶରୀର ଏଠାରୁ ଅପସାରିତ କରିଦିଅ ! [ପ୍ରହରୀଙ୍କର ତଥା କରଣ] (ରାଣୀପ୍ରତି) ଦେଖେ ପିଶାଚି, କି ଦଣ୍ଡ ହେବ ଜାଣୁ ?

ରାଣୀ — ହାଃ, ହାଃ, ହାଃ, ଦଣ୍ଡ ? କିଏ ଦେବ ଅଜୟ ! ନା, ନା, ସେ କଣ ମୋତେ ଦଣ୍ଡ ଦେଇ ପାରିବ, ଉଁ, ହୁଁ, ସେ ଦଣ୍ଡ ହେବ ନାହିଁ ।

ଅଜୟ — ପାପିଷ୍ଠେ ! ଏପରି କାର୍ଯ୍ୟ କରିବା ପୂର୍ବରୁ ତୋର ମସ୍ତକରେ ବଜ୍ରାଘାତ ହେଲା ନାହିଁ । ତୁ ଜଘନ୍ୟ ଭୋଗଲାଳସାର ବଶବର୍ତ୍ତୀ ହୋଇ ଇହକାଳ ଓ ପରକାଳ ନଷ୍ଟ କଲୁ । ନାରୀର ଏକମାତ୍ର ଦେବତା, ତାର ଏକମାତ୍ର ଅବଲମ୍ବନ ସ୍ୱାମୀଙ୍କୁ ହତ୍ୟା କଲୁ ? ପୁଣି ସେହି କୁତ୍ସିତ କାମଲାଳସାର ତୃପ୍ତି ସାଧନ ପାଇଁ ମୋର ନିର୍ଦୋଷ ଜ୍ୟେଷ୍ଠ ଭାଇଙ୍କୁ ମରାଇଲୁ, ଏହା ଉଚ୍ଚ ରାଜକୁଳରେ କଳଙ୍କ ଲଗାଇବା ପୂର୍ବରୁ ତୋର ଅଙ୍ଗପ୍ରତ୍ୟଙ୍ଗ ଅବଶ ହୋଇ ଗଲା ନାହିଁ ? ମନ୍ତ୍ରୀ ମହାଶୟ ! ଏ ରାକ୍ଷସୀର ଦେହକୁ ଖଣ୍ଡ ୨ କରି କାଟି ଅଗ୍ନିରେ ନିକ୍ଷେପ କରାଅ ।

ରାଣୀ—ସାବାସ୍ ଅଜୟ ! ଏ ବେଶ ଦଣ୍ଡ, ହାଃ ହାଃ ହାଃ, କିନ୍ତୁ ଏଥି-ରେ କ'ଣ ମୁଁ ମରିବ ?

ଅମର—ଯୁବରାଜ ! ମୋର ଗୋଟିଏ ନିବେଦନ ରକ୍ଷା କରନ୍ତୁ, ଥରେ ଭାବ ଦେଖନ୍ତୁ ଯେ ଆପଣଙ୍କର ଗର୍ଭଧାରିଣୀ ଜନନୀ, ଜନନୀଙ୍କର ଅପରାଧ ପାଇଁ ପୁତ୍ରପକ୍ଷେ ଦଣ୍ଡବିଧାନ କରିବା କି ଉଚିତ ? ଆପଣତ ଜାଣନ୍ତି "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।"

ଅଜୟ—କ୍ଷମା କରନ୍ତୁ ସନ୍ନ୍ୟାସୀ ମହାଶୟ, ଆପଣଙ୍କର ଅନୁରୋଧ ରକ୍ଷା କରି ପାରୁ ନାହିଁ, ରାଜ ସିଂହାସନରେ ବସି ବିଚାରପତି ହୋଇ ପକ୍ଷପାତ କଲେ ନ୍ୟାୟର ଅପବ୍ୟବହାର ହୁଏ ଏବଂ ରାଜ ଧର୍ମରେ ବ୍ୟାଘାତ ଘଟେ ।

ଅମର—ଭାବି ଦେଖନ୍ତୁ ଯୁବରାଜ, କିଏ ରାଜା କାହାର ରାଜ୍ୟ ମନୁଷ୍ୟ କ'ଣ ମନୁଷ୍ୟର ପାପ ପୁଣ୍ୟର ବିଚାର କରି ପାରେ, ଯେଉଁ ଜଗତ୍କର୍ତ୍ତାଙ୍କର ଏ ରାଜ୍ୟ ସେ ମନୁଷ୍ୟର ପାପ ପୁଣ୍ୟ ବିଚାର ଭାର ନିଜ ହାତରେ ରଖି ଅଛନ୍ତି । ସେହି ଏକା ଅପରାଧର ଦଣ୍ଡବିଧାନ କରି ପାରିବେ, ଦେଖ ଯୁବରାଜ, ତୁମେ ଦଣ୍ଡଦେବା ପୂର୍ବରୁ ଉପର ଈଶ୍ୱରଙ୍କର ଦଣ୍ଡ ବିଧାନ ହୋଇଛି । ଗୁଣଟର ପରିଣାମତ ଦେଖିଲ ଆଉ ରାଣୀ ମଧ୍ୟ ପାଗଳିନୀ, ପାହାଙ୍କ ନିକଟରେ ସମସ୍ତ ସମାନ ସେହି ଏକା ଆମ୍ଭମାନଙ୍କର ଅପରାଧର ଦଣ୍ଡବିଧାନ କରି ପାରନ୍ତି, ଏହି ସଂସାରରେ କେହି କାହାର ଦଣ୍ଡବିଧାନ କରିପାରେ ନାହିଁ, ଜଣେ ଅନ୍ୟଜଣଙ୍କର ପ୍ରାଣନାଶ କରିପାରେ ନାହିଁ ।

ଅଜୟ—ତେବେ ଏ କପରି ମୋର ସ୍ୱର୍ଗତ ପିତା ଓ ଦେବତୁଲ୍ୟ ଭ୍ରାତାଙ୍କୁ ମାରିଅଛି ?

ଅମର—ପିତାଙ୍କର ନିଜର ଅପରାଧ ପାଇଁ ଈଶ୍ୱରଙ୍କ ଦ୍ୱାରା ଦଣ୍ଡିତ ହୋଇ ଅଛନ୍ତି ।

ଅଜୟ—କିନ୍ତୁ ମୋର ଭାଇତ କୌଣସି ଅପରାଧକର ନଥିଲେ । ତାଙ୍କୁ କାହିଁକି ଈଶ୍ୱର ହତ୍ୟା କରାଇଲେ ?

ଅମର—ଦୟାମୟଙ୍କ ବିଗ୍ରହରେ ବିଶ୍ୱାସ କର ଯୁବରାଜ ! ଏହିଦେଖ ତୁମ୍ଭର ଜ୍ୟେଷ୍ଠଭ୍ରାତା ଅଦ୍ୟାପି ଜୀବିତ ।

( ଗୁପ୍ତବେଶ ତ୍ୟାଗ କରିବା )

ଅଜୟ—ଏ କ'ଣ ! ଏ ଯେ ମୋର ଭାଇ ? ( ପଦତଳେ ପତନ )

ଅମର—(ଉଠାଇ ନେଇ) ପ୍ରାଣାଧିକ ଭାଇ ମୋର । ଭଗବାନ ଯାହା କରନ୍ତି ଭଲ ପାଇଁ କରନ୍ତି । ତୋର ଦୋଷ କ'ଣ ଭାଇ, ପିତାଙ୍କର ବା ଦୋଷ କ'ଣ ? ସମସ୍ତ ମୋର କର୍ମଫଳ ।

ମନ୍ତ୍ରୀ—ଯୁବରାଜ ସାହେବ ! ଏ ବୃଦ୍ଧର ଦୋଷାଦୋଷ ମାର୍ଜ୍ଜନା କରନ୍ତୁ ।

ଅଜୟ—ମନ୍ତ୍ରୀ ମହାଶୟ ! ଆଜ ବଡ ଆନନ୍ଦର ଦିନ । ଯାଅ; ତୁମ୍ଭେ ଉତ୍ସବର ଆୟୋଜନ କର । ଆଜଠାରୁ ଏ ରାଜ ସିଂହାସନରେ ମୋର କିଛି ଅଧିକାର ନାହିଁ । ଏ ନନା ସାହେବଙ୍କର ।

( ମୁକୁଟ ପିନ୍ଧାଇ ଦେବାକୁ ଯିବାକାଳେ ଅମରସିଂହ ବାଧା ଦେବା )

ଅମର—ନା ଭାଇ ! ମୁଁ ଗୃହତ୍ୟାଗୀ ବନବାସୀ, ମୋର ଏ ସିଂହାସନରେ କି ପ୍ରୟୋଜନ ? ବିଶେଷତଃ ଜଣେ ରାଜା ଉପସ୍ଥିତ ।

ଅଜୟ—ନନା ମହାଶୟ ! ଏ କ'ଣ କହୁଛନ୍ତି ? ଜ୍ୟେଷ୍ଠ ଆପଣ ପୁଣି ପିତୃ ତୁଲ୍ୟ । ଦୈବ ଦୁର୍ବିପାକ ହେତୁ ଏ ଅଜ୍ଞାନ ମୂଢ଼ କନିଷ୍ଠ ସହୋଦର ଆପଣଙ୍କର ପଦ ସେବାରୁ ବଞ୍ଚିତ । ଆପଣ ଯଦି ଗୃହ ତ୍ୟାଗୀ ହୋଇ ବନ ଗମନ କରିବେ ତେବେ ମୋର ଏ ଛାର ଜୀବନରେ କି ପ୍ରୟୋଜନ ? (ଆତ୍ମହତ୍ୟା କରିବାକୁ ଉଦ୍ୟତ)

ଅମର—(ବାଧା ଦେଇ) ଛି, ଭାଇ !

ଅଜୟ—ଭାଇ ଏପରି ସମୟରେ ଆପଣଙ୍କର ଏହି କନିଷ୍ଠଭ୍ରାତା ପ୍ରତି ବିମୁଖ ହେବା କି ଉଚିତ ?

ଅମର — ହେଉ, ତେବେ ସମସ୍ତଙ୍କର ଇଚ୍ଛାମତେ ମୁଁ ଏ ଭାର ଗ୍ରହଣ କଲି

( ସିଂହାସନରେ ଉପବେଶନ ଓ ଅଜୟ ମୁକୁଟ ପିନ୍ଧାଇ ଦେବା ଓ ନମସ୍କାର କରିବା )

ଅଜୟ — ଆପଣ ବର୍ତ୍ତମାନ ଏ ପାପୀୟସୀର ଦୋଷାଦୋଷ ବିଚାର କରି ଦଣ୍ଡବିଧାନ କରନ୍ତୁ ।

ଅମର — ଦେଖୁ ନାହିଁ ଅଜୟ ଈଶ୍ୱର କପରି ଦଣ୍ଡବିଧାନ କରିଅଛନ୍ତି ? ରାଣୀ ଯେ ବର୍ତ୍ତମାନ ପାଗଳିନୀ । ତାଙ୍କର କ'ଣ ହିତାହିତ ଜ୍ଞାନ ଅଛି ? ଦେଖୁ ନାହିଁ, ସେ କପରି ଅନ୍ୟ ମନୁଷ୍ୟଙ୍କୁ ଦେଖି ଭୁଲୁଅଛନ୍ତି ଓ ଆଉ କେତେ ଗୁଡ଼ାଏ ଅପ୍ରାସଙ୍ଗିକ କଳ୍ପନା କରୁଛନ୍ତି ଆମ୍ଭେମାନେ କ'ଣ ଏହାଙ୍କୁ ଦଣ୍ଡବିଧାନ କରିବା । ବର୍ତ୍ତମାନ ଏହାଙ୍କୁ ମୁକ୍ତି ଦେବାର କର୍ତ୍ତବ୍ୟ ।

ରାଣୀ — (ପାଗଳିନୀ ପରି) ଉଃ, ଉଃ, ଏ କିଏ ଏଯେ ସେହି ଅମରର ପ୍ରେତାତ୍ମା, ଦାନ୍ତ କଟ ମଟ କରି ମତେ ଗ୍ରାସ କରିବାକୁ ଆସୁଅଛି ନା ନା, ମୋ ପାଖକୁ ଆ ନାହିଁ । ମତେ ରକ୍ଷା କର । ସେଠାରେ ପୁଣି ଏ କିଏ, ଏ ଯେ ରାଜା । ମୋର ସ୍ୱାମୀ ମୋତେ ଅଙ୍ଗୁଳି ନିର୍ଦ୍ଦେଶ କରି ଡ଼ାକୁଛନ୍ତି ଓ ହୋ ! କି ଭୟଙ୍କର ଦୁଇ ହାତରେ ଦୁଇଟା ତପ୍ତ ଲୌହ ଶଳାକାରେ ମୋର ଚକ୍ଷୁ ଭୁଷି ଦେବାକୁ ଆସୁଛନ୍ତି । ଆଉ ରକ୍ଷାନାହିଁ )　　　( ପଳାୟନ )

ଅମର — ଦେଖ ଅଜୟ ଭଗବାନଙ୍କର କିପରି ବିଚାର, ସମସ୍ତଙ୍କୁ ନିଜ-କୃତ ପାପ ଓ ପ୍ରତାରଣାର ଫଳ ଭୋଗ କରିବାକୁ ହେବ ।

( ରୋହିଣୀର ପ୍ରବେଶ )

ରୋହିଣୀ — ରାଜାଧିରାଜ ! ମୁଁ ଯେ ଆପଣଙ୍କୁ ଏତେଦିନ ପ୍ରତାରଣା କଲି, ମୋର ପ୍ରତାରଣା ପାଇଁ ମୋତେ କି ଦଣ୍ଡବିଧାନ କରିବେ ?

ଅମର — ତୁମ୍ଭର କି ପ୍ରତାରଣା । ବାଳକ !
ରୋହିଣୀ — ( ବାଳକ ବେଶ ତ୍ୟାଗ ପୂର୍ବକ ଜାନୁପାତରେ ) କ୍ଷମା କରନ୍ତୁ ମହାରାଜ ! ମୁଁ ସାହାପୁର ରାଜକନ୍ୟା ରୋହିଣୀ । ଯେଉଁ ଦିନ ଆପଣଙ୍କୁ ସେହି ଭୀଷଣ ଯୁଦ୍ଧକ୍ଷେତ୍ରରେ ଦେଖି-ଥିଲି, ସେହି ଦିନୁ ମୁଁ ଆପଣଙ୍କଠାରେ ଆତ୍ମ ସମର୍ପଣ କରିଛି । ଆପଣଙ୍କର ମୃତ୍ୟୁ ସମ୍ବାଦ ପାଇ ଶୋକରେ ଅଧୀର ହୋଇ ସଂସାରର ସମସ୍ତ ମାୟା ମମତା ତୁଟାଇ ସ୍ୱାମୀ ପଦ ଧ୍ୟାନ କରିବା ଲାଳସାରେ ବୃଦ୍ଧା ଜନନୀଙ୍କୁ ଛାଡି ବାଳକ ବେଶରେ ଚାଲି ଆସି ଥିଲି । ତେଣିକି ସମୁଦାୟ ଘଟଣା ତ ଆପଣ ଜାଣନ୍ତି ।
ଅଜୟ — ଏହାର ଦଣ୍ଡ ମୁଁ ଦେବି ।

( ରୋହିଣୀଙ୍କୁ ନେଇ ଅମରସିଂହଙ୍କ ବାମପାର୍ଶ୍ୱେ ବସାଇବା )
ସଖୀ ମାନଙ୍କର ପ୍ରବେଶ ଓ ଗୀତ ।

( ଆଜ ) ଦୂର ହୋଇଲା ଅନ୍ଧାର ରାତ,
ଭୁବନ ଗଗନ ଗାଉଛି ହରଷେ ଅମର କୀରତି ।
ନିୟତି ଲିଖନ — କେ କରେ ଖଣ୍ଡନ
କର୍ମ୍ମ ଯେସନ ଜୀବ ଭୋଗନ୍ତି ଆପଣ,
ତାର ସାକ୍ଷ୍ୟ ଲକ୍ଷ — ବାରେ ଦେଖି ଶିଖ
ଅମର ଗୁଣ କୀର୍ତ୍ତନ
ଭାଇ ଭାଇ ମେଳ ହୋଇ — ବାମେ ସତୀ ରାଣୀ ନେଇ
ରହିଛନ୍ତି ସିଂହାସନେ ଯାଇ;
ଅମର, ଅମର ହେଉ — ଇତିହାସେ ନାମ ରହୁ
ଆସ ସର୍ବେ ଗାଇ ଜୟଗୀତ ।।

—※—

ଯବନିକା ପତନ ।

ସମାପ୍ତ

# ଶୁଦ୍ଧିପତ୍ର ।

ପ୍ରେସର ଦୂରବର୍ତ୍ତୀ ସ୍ଥାନରେ ମୁଁ ରହିଥିବାରୁ ପ୍ରୁଫ୍‌ସଂଶୋଧନର ଭାର ଅନ୍ୟ ବ୍ୟକ୍ତିଙ୍କ ହସ୍ତରେ ଅର୍ପଣ କରିଥିଲି ମାତ୍ର ତାଙ୍କର ଅସାବଧାନତା ବଶତଃ କେତେଗୁଡ଼ିଏ ଲିପିପ୍ରମାଦ ରହିଗଲା । ସେଥି-ପାଇଁ ପାଠକ ମାନଙ୍କଠାରୁ କ୍ଷମାଭିକ୍ଷା କରୁଅଛି । ଦ୍ୱିତୀୟ ସଂସ୍କରଣରେ ସେସବୁ ସଂଶୋଧିତ ହୋଇ ମୁଦ୍ରିତ ହେବ ।

ଗ୍ରନ୍ଥକର୍ତ୍ତା ।

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ—ଶୁଦ୍ଧ |
|---|---|---|
| ୧ | ୧୪ | ଅସହ୍ୟଃ—ଅସହ୍ୟ |
| ୨ | ୫ | କାର୍ଯ—କାର୍ଯ୍ୟ |
| ୩ | ୧ | ପଦସେବା-ପଦସେବାରେ |
| ୩ | ୨ | ଭିରୁ—ଭୀରୁ |
| ୩ | ୧୮ | ଭୃକୁଟୀ—ଭ୍ରୂକୁଟୀ |
| ୫ | ୧୬ | ଗର୍ବୀଣୀ—ଗର୍ବିଣୀ |
| ୬ | ୧ | ଗର୍ବପର୍ବତ—ଗର୍ବପର୍ବତରୁ |
| ,, | ୧୨ | ହେଲେଣି—ହେଲଣି |
| ୧୧ | ୩ | ସୈନ—ସୈନ୍ୟ |
| ,, | ୧୫ | ଦୁରର—ଦୂରରଁ |
| ,, | ୧୫ | ଷର୍ଗ—ସ୍ୱର୍ଗ |
| ୧୨ | ୧୩ | ସ୍ଥୀର—ସ୍ଥିର |
| ,, | ୨୨ | ନିକଟକୁ—ନିକଟରେ |
| ୧୩ | ୫ | ତତେ—ତୋତେ |
| ,, | ୧୮ | ଜନ୍ମଭୁମିର ସ୍ୱାଧି—ଜନ୍ମଭୂମିରସ୍ୱାଧୀ |
| ୧୪ | ୩ | ଜନ୍ମଭୁମି—ଜନ୍ମଭୂମି |
| ,, | ୫ | ରଜାରାଣୀ—ରାଜରାଣୀ |
| ,, | ୧୮ | ଜନ୍ମଭୁମି—ଜନ୍ମଭୂମି |
| ୧୫ | ୧୫ | ଜନ୍ମଭୁମି—ଜନ୍ମଭୂମି |
| ୧୬ | ୨ | ମଧୂମସ୍ତ—ମଧୁମସ୍ତ |
| ,, | ୧୯ | ତାଳୁକଣ୍ଠଦନ—ତାଳୁ ସେ କଣ୍ଠଦନ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ—ଶୁଦ୍ଧ |
|---|---|---|
| ୧୪ | ୧ | ମହାଦ୍ରୁତ—ମହାଦ୍ୟୁତିଂ |
| ,, | ୧ | ଶଂକାଂଶଂ—ସକାଂକ୍ଷଂ |
| ,, | ୧ | ପେନ୍ଦ୍ର—ପେନ୍ଦ୍ରଂ |
| ୧୯ | ୨ | ଧାନ୍ତାରଂ—ଧାନ୍ତ୍ୟାରଂ |
| ,, | ୨ | ପାପଘ୍ନପ୍ରଣତୋସ୍ମି—ପାପଘ୍ନଂ ପ୍ରଣତୋସ୍ମି |
| ,, | ୨ | ଦିବାକର—ଦିବାକରଂ |
| ,, | ୧୧ | ସମସ୍ତ ପାସ୍ଥିତ—ସମୁପସ୍ଥିତ |
| ,, | ୧୩ | ଶବରୁ—ଶତ୍ରୁର |
| ୨୧ | ୧୦ | ବଜ୍ରତନ୍ତୁ—ବଜ୍ରନ୍ତୁ |
| ୨୫ | ୯ | ଖେଳଥିଲ—ଖେଳୁଥିଲ |
| ୨୮ | ୧୩ | ଆପଣଙ୍କ ପଦ—ଆପଣଙ୍କ |
| ୨୯ | ୫ | ସ୍ଥିରକରପାର—ସ୍ଥିରକରି |
| ,, | ୧୦ | ମୃତ୍ୟୁସହସ୍ରେଗୁଣେ—ମୃତ୍ୟୁସହସ୍ରଗୁଣେ |
| ୩୩ | ୮ | ବେଳକ—ବେଳକୁ |
| ,, | ୯ | ଆଛ—ଅଛି |
| ,, | ୧୨ | କନ୍ୟମନେ—କନ୍ୟମନେ କଛ |
| ୩୭ | ୧ | ସେ ବଶ୍ୱଦେବ ରଜା—ସେବଦେବରାଜ |
| ,, | ୧୧ | ନାଟକ—ନାଟକେ |
| ୪୦ | ୪ | ପରଗୀ—ପ୍ରଗତୀ |
| ,, | ୧୨ | ବାଓ—ବାଓ |
| ,, | ୧୬ | ଲଜତା—ଲକ୍ଷିତା |
| ,, | ୨୩ | ଶରତାର—ଶିରତାର |
| ୪୩ | ୨୦ | ଅଧସ୍ତନର—ଅଧ୍ୟସ୍ତନର |
| ,, | ୨୨ | ନଦୋଷନ—ଦ୍ୱେଷୀ |
| ୫୯ | ୨୧ | କୃପ—କୃପା |
| ୪୯ | ୨୨ | ବ୍ୟଗତ—ବ୍ୟତୀତ ଆମ୍ଭ |
| ୫୫ | ୯ | ଜଗନ୍ନାଥ—ଜଗନ୍ନାତା |
| ୬୨ | ୨୦ | ସମକ—ସମାଙ୍କ |

—o❋o—